ସଂକଳନ ଓ ସଂପାଦନା: ସନ୍ତୋଷ କୁମାର ମହାନ୍ତି

# ଭାଷା ଜିଜ୍ଞାସା



ସନ୍ତୋଷ କୁମାର ମହାନ୍ତି ଓ ପ୍ରଫୁଲ୍ଲ କୁମାର ତ୍ରିପାଠୀଙ୍କ ଚିଠିରେ ଭାଷାଚର୍ଚ୍ଚା




ବହିର ଆତ୍ମକଥା :

ଜାଣିବାର ଇଚ୍ଛା ହିଁ ଜିଜ୍ଞାସା ; ଯାହାର କେବେ ଶେଷ ନ ଥାଏ । ସନ୍ତୋଷଙ୍କର ଏହି ଜିଜ୍ଞାସା କେବଳ ଭାଷା ସଂପର୍କିତ । ସେସବୁର ସମାଧାନ କରିଛନ୍ତି ଭାଷାବିତ୍ ପ୍ରଫୁଲ୍ଲ କୁମାର ତ୍ରିପାଠୀ ।

'ସମ୍ବାଦ'ର ଦୈନିକ 'ଭାଷା ଭାବନା' ସ୍ତମ୍ଭ ଯୋଗୁଁ ପରସ୍ପରଙ୍କ ପରିଚୟ ହୁଏ । ସେଇଠୁ ଚିଠିରେ ଆରମ୍ଭ ହୁଏ ଦୁହିଁଙ୍କ ଭାଷାଚର୍ଚ୍ଚା । ଏହି ବହିରେ ଚିଠିଗୁଡ଼ିକ ସହିତ ସ୍ଥାନିତ ହୋଇଛି ଡକ୍ଟର୍ ତ୍ରିପାଠୀଙ୍କର ଜୀବନାଲେଖ୍ୟ, ଦୁଇ ଜଣଙ୍କ ଭାଷାତାତ୍ତ୍ୱିକ ପ୍ରେମ କଥା ଏବଂ ତାହାର ପୃଷ୍ଠଭୂମିରେ ଥିବା ସନ୍ତୋଷଙ୍କର କିଛି ଅନୁଭବ ଓ ପୁଲକ ।

ଏଥି ସହିତ ଡକ୍ଟର୍ ତ୍ରିପାଠୀଙ୍କର ୨୬ଟି ଭାଷାମୂଳକ ବହିର ସମୟାନୁକ୍ରମିକ ସଂକ୍ଷିପ୍ତ ପରିଚୟ । ଭାଷା ସଂପର୍କିତ ରହିଛି ତାଙ୍କର କିଛି ଗୁରୁତ୍ୱସୂଚକ ବାକ୍ୟାବଳି; ଯାହା ଅଭିଧାନ ଶୈଳୀରେ 'ପ୍ରଫୁଲ୍ଲ ଭାବକୋଷ' ନାମରେ ନାମିତ ।

ଚିଠିରେ ଭାଷା ଆଲୋଚନାକୁ ନେଇ ଏପରି ବହି ଭାରତୀୟ ଭାଷାରେ ପ୍ରଥମ ।

# ଭାଷା ଜିଜ୍ଞାସା

(ସନ୍ତୋଷ କୁମାର ମହାନ୍ତି ଓ ପ୍ରଫୁଲ୍ଲ କୁମାର ତ୍ରିପାଠୀଙ୍କ ଚିଠିରେ ଭାଷାଚର୍ଚ୍ଚା)

ସଂକଳନ ଓ ସଂପାଦନା

**ସନ୍ତୋଷ କୁମାର ମହାନ୍ତି**

ପ୍ରଫେସର ଗଗନେନ୍ଦ୍ର ନାଥ ଦାଶଙ୍କ ମୂଲ୍ୟବାନ ଅଭିମତ ସହିତ



ଏଥେନା ବୁକ୍‌ସ୍
ଭୁବନେଶ୍ୱର

**ଭାଷା ଜିଜ୍ଞାସା**

(ସନ୍ତୋଷ କୁମାର ମହାନ୍ତି ଓ ପ୍ରଫୁଲ୍ଲ କୁମାର ତ୍ରିପାଠୀଙ୍କ ଚିଠିରେ ଭାଷାଚର୍ଚ୍ଚା)

**ସଂକଳନ ଓ ସଂପାଦନା : ସନ୍ତୋଷ କୁମାର ମହାନ୍ତି**

ପ୍ରକାଶକ ଓ ମୁଦ୍ରାକର : ଏଥେନା ବୁକ୍ସ, ଭୁବନେଶ୍ୱର-୨, ଓଡ଼ିଶା
ଅକ୍ଷର ସଂଯୋଜନ : ଏଲିନା ଚୌଧୁରୀ (ପଟ୍ଟନାୟକ)
ଅକ୍ଷର ସଜ୍ଜା : କବିତା ପାତ୍ର, ପ୍ରଚ୍ଛଦ : ତୃପ୍ତିମୟୀ ଜେନା
ପ୍ରଥମ ମୁଦ୍ରଣ : ୨୦୧୪
ପୃଷ୍ଠା : ୮୦, ମୂଲ୍ୟ : ଟ.୨୭/-

**भाषा जिज्ञासा**

(सन्तोष कुमार महान्ति और प्रफुल कुमार त्रीपाठी के पत्रों में भाषा-विमर्श)

**संकलन एवं संपादन : सन्तोष कुमार महान्ति**

प्रकाशक एवं मुद्रक : एथेना बुक्स, भुवनेश्वर-२, ओडिशा
टंकक : एलिना चौधुरी (पट्टनायक)
संयोजक : कविता पात्र, आवरण : तृप्तिमयी जेना
प्रथम मुद्रण : २०१४,
पृष्ठ-८०, मूल्य : २७ रुपये

**Bhaashaa Jijnaasaa**

(Linguistic Discourse Through Letters Between Santosh Kumar Mohanty and Prafulla Kumar Tripathy)

**Compiled & Edited by : Santosh Kumar Mohanty**

Published and Printed by : Athena Books, Bhubaneswar-2, Odisha
e-mail : rkdas.athena@gmail.com, Ph. 9437323152
Typed by : Elina Choudhury (Pattanaik)
Composed by : Kabita Patra, Cover Design : Truptimayee Jena
**Category : Correspondences on Odia Linguistics**
First Print : 2014
Page : 80, **Price : Rs. 27/-**

**ISBN 13 978-93-80824-44-4**

Published with financial Assistance from the Grant in Aid unit of **Central Institute of Indian Languages** (Ministry of Human Resource Development, Department of Higher Education, Govt. of India), Manasagangotri, Mysore-570006 vide sanction letter No. 51-8 (12)/ 2013-14/Ory/Grant dated 16/10/ 2014 under the Publication scheme of Grant-in- Aid (Scheme-II).

ଅଜାଙ୍କ ପାହାନ୍ତିଆ ହେଁସବୁଣା
ଓ ମୋର ପଢ଼ା ବାହାନାରେ
ତ୍ରିପାଠୀଙ୍କୁ ଚିଠି ଲେଖା ।
କାଉ-କୁକୁଡ଼ା ରଡ଼ିବା ବେଳର ସ୍ମୃତି
ଭାରି ମନେପଡ଼େ ଆଜି ।

## ନାନା ଜିଜ୍ଞାସା



### ଜିଜ୍ଞାସା

## ପରିଶିଷ୍ଟାବଳି

ଚିଠିରେ ଭାଷାଚର୍ଚ୍ଚା : ଓଡ଼ିଆ ଓ ଅନ୍ୟ ଭାରତୀୟ ଭାଷାରେ ପ୍ରଥମ ବହି

# ଭାଷା ଜିଜ୍ଞାସା

FIRST BOOK IN ODIA AND ANY INDIAN LANGUAGES
ON LINGUISTIC DISCOURSE THROUGH LETTERS.

''କହିଲେ କବି, କହିଲେ ଜ୍ଞାନୀ,
'ଭାଷା ଜୀବନ-ଧନ',
ମାଆର ଭାଷା, ସାହା ଭରସା
ସେବାରେ ଦିଅ ମନ ।''

●

''କହ ଓଡ଼ିଆ, ଲେଖ ଓଡ଼ିଆ,
ପଢ଼ ଓଡ଼ିଆ ବହି,
ହୁଅ ଓଡ଼ିଆ, ଓଡ଼ିଆ ଜାତି,
ମହତ ଥାଉ ରହି ।''

# ଭୁଲି ହୁଏନା

ଯାହାଙ୍କ ଚିଠିଗୁଡ଼ିକ ଏହି ବହିରେ ଫୁଲ ପରି ଗୁନ୍ଥା ହୋଇଛି ; ଯିଏ ମୋତେ ଛୁଆବେଳୁ ମୋର ପ୍ରଶ୍ନରେ ଚିଠି ପରେ ଚିଠି ଲେଖି ଅଦୃଶ୍ୟରେ ଥାଇ ମୋର ଭାଷା-ପ୍ରେମକୁ ଭାରି ଆଦରରେ ଉତ୍ସାହିତ କରିଛନ୍ତି ; ତାଙ୍କୁ ସକାଳର ସଜ-ଫୁଲ, ଚନ୍ଦନ ସହ ମୋର ଭକ୍ତିପୂର୍ଣ୍ଣ ପ୍ରଣତି ଜଣାଉଛି । ସେ ହେଉଛନ୍ତି ଶବ୍ଦ-ଯାଦୁକର ଡକ୍ଟର୍ ପ୍ରଫୁଲ୍ଲ କୁମାର ତ୍ରିପାଠୀ ।

ତେବେ ସେହି ଚିଠିଗୁଡ଼ିକୁ ଏକାଠି କରି ଏବେ ବହି କରିବାରେ ମୋର ସାହସ କୁଳାଉ ନ ଥିବା ବେଳେ ଆମ ବୋରିକିନା ସ୍କୁଲର ଛାତ୍ର ଓ ମୋ ବନମାଳି ଦାଦାଙ୍କ ସାଙ୍ଗ, ଅଧ୍ୟାପକ ଦେବେନ୍ଦ୍ର କୁମାର ଦାଶ ଛପେଇବା ପାଇଁ ବେଶ୍ ଉତ୍ସାହିତ କରିଛନ୍ତି । ତେଣୁ ବହି ପ୍ରକାଶ ଅବସରରେ ତାଙ୍କୁ ମୋର କୃତଜ୍ଞତା ଜଣାଉଛି । ପାଣ୍ଡୁଲିପିକୁ ପଢ଼ି ପୂଜ୍ୟ ଗୁରୁ ପ୍ରଫେସର୍ ଗଗନେନ୍ଦ୍ର ନାଥ ଦାଶ ଏକ ମନ୍ତବ୍ୟ ଲେଖିଥିବାରୁ ତାଙ୍କଠାରେ ମୁଁ ବିଶେଷଭାବେ କୃତଜ୍ଞ ।

ମୋର ଭାବନା ଓ ଏହି ଚିଠିଗୁଡ଼ିକ ସହିତ ପ୍ରତ୍ୟକ୍ଷ ବା ପରୋକ୍ଷରେ ସଂପୃକ୍ତ ଥାଇ ମୋତେ ଉତ୍ସାହ ଦେଇଥିବା ବ୍ୟକ୍ତିମାନେ ଏଠାରେ ନିଶ୍ଚିତଭାବେ ସ୍ମରଣୀୟ । ବହୁ ଗପ ବହି, ପତ୍ରିକା ମାଗଣାରେ ଦେଇ ମୋ ପଢ଼ା ଅଭ୍ୟାସକୁ ବଢ଼େଇଥିବା ଏବଂ ଭଲ ଲାଗୁଥିବା ଲେଖାକୁ କାଟି ସଂଗ୍ରହ କରିବା କହି ମୋତେ ଉଦ୍ୟମୀ କରାଇଥିବା ଡେଙ୍ଗାପୋଲର ଖବରକାଗଜ ବିକ୍ରେତା ରବୀନ୍ଦ୍ର କୁମାର ଦାସ ଏଠି ବେଶି ସ୍ମରଣୀୟ । ତାଙ୍କ କଥା ମାନି ଭଲ ଲେଖା ଭାବି ମୁଁ ପ୍ରଥମେ 'ସମ୍ବାଦ'ରୁ ତ୍ରିପାଠୀ ସାର୍‌ଙ୍କ 'ଭାଷା ଭାବନା'କୁ ହିଁ ସଂଗ୍ରହ କରିଥିଲି ।

ବୋରିକିନା ଅଞ୍ଚଳର ଡାକବାଲା ଅଶୋକ ନନା ଆମ ଦାଣ୍ଡରେ ଅଟକିଲେ ତାଙ୍କ ଝୁଲାମୁଣିରେ ଯେ ମୋ ଚିଠି ଥାଏ ; ତାହା ଟିଭି ଧାରାବାହିକର ଶେଷ ଦୃଶ୍ୟ ପରି ଯେ ବହୁ ଉତ୍କଣ୍ଠାପୂର୍ଣ୍ଣ ତାହା ପିଲାଦିନରୁ ମୁଁ ଜାଣେ । ଏହି ଚିଠିଗୁଡ଼ିକ ସଂକଳିତ ହେବାବେଳେ ତାଙ୍କ ବାହନ ଓ ମୁହଁ ମୋ ଭାବନାରେ ଆସିବା ସ୍ୱାଭାବିକ । ମୋ ମନର ବାହକ ସେ । ତାଙ୍କୁ ମୋର ଲକ୍ଷେ କୃତଜ୍ଞତା ।

କଟକ ଆକାଶବାଣୀର କାର୍ଯ୍ୟକ୍ରମ ନିଷ୍ପାଦକ ମୃତ୍ୟୁଂଜୟ ସାମଲଙ୍କଠାରୁ 'ଠିକ୍ କହନ୍ତୁ ଠିକ୍ ଲେଖନ୍ତୁ' କାର୍ଯ୍ୟକ୍ରମର ନାମ, ମସିହା ଆଦି ମୁଁ ସଂଗ୍ରହ କରି ଆବଶ୍ୟକସ୍ଥଳେ ଲେଖିଛି ।

ସେହିପରି 'ଆମ ଓଡ଼ିଶା' ପ୍ରକାଶନର ମୁଖ୍ୟ ଓ 'ପୌରୁଷ'ର ସଂପାଦକ ଅସିତ ମହାନ୍ତି 'ଭାଷା ଭାବନା'ର ଆରମ୍ଭ ଓ ଶେଷ ତାରିଖ କାହା ମାଧ୍ୟମରେ 'ସମ୍ବାଦ'ରୁ କାଢ଼ି ମୋତେ କହିଛନ୍ତି । ସୂଚନାଗୁଡ଼ିକୁ ପ୍ରାୟ ନିର୍ଭୁଲ କରିବା ପାଇଁ ଏହି ଦୁଇ ଜଣ ମୋର କିଛି ପରିମାଣରେ ସହାୟକ ହୋଇଛନ୍ତି । ପ୍ରକୃତରେ ମୃତ୍ୟୁଂଜୟବାବୁ ଓ ଅସିତବାବୁ ଦୁହେଁ ଧନ୍ୟବାଦର ପାତ୍ର ।

ପ୍ରଫୁଲ ସାର୍‌ଙ୍କ ହାତଲେଖା ଅକ୍ଷରକୁ 'ପାଚିଲା ଅମୃତଭଣ୍ଡା ପରି' ବହୁ ଭାବି ଭାବି ନାଁ ଦେଇଛନ୍ତି ଆମ ମହୀଶୂର ଅନୁଷ୍ଠାନରେ ସାଂକେତିକ ଭାଷା ପାଇଁ କାମ କରୁଥିବା ପ୍ରିୟ ସହକର୍ମୀ ଶ୍ରୀ ଅମରେଶ ଗୋପାଳକ୍ରିଷ୍ଣନ (Shri Amaresh Gopalkrishanan) । ଏହି ଚିତ୍ରକଳ୍ପଟିର ସ୍ୱତ୍ୱ ହେଉଛି ତାଙ୍କର । ଏଥିପାଇଁ ଧନ୍ୟବାଦ ଜଣାଉଛି ତାଙ୍କୁ ।

କଟକ କଲ୍ୟାଣୀନଗରର ସଂଜୟବାବୁଙ୍କ ପତ୍ନୀ ଶ୍ରୀମତୀ ଏଲିନା ଚୌଧୁରୀ (ପଟ୍ଟନାୟକ) କଂପ୍ୟୁଟରରେ ପାଣ୍ଡୁଲିପିର ଅକ୍ଷର ସଂଯୋଜନ କରିଛନ୍ତି । ମଝିରେ ବାବୁଙ୍କ ଶ୍ରୀମତୀ ବାପଘର ଚାଲିଯାଇଥିବାରୁ ଉଚ୍ଛୁର୍ ହୋଇଯିବ ଭାବି ଡକରା ପଡ଼ିବାରୁ ତୁରନ୍ତ କାମରେ ଯୋଗଦେଇ ଏହାକୁ ମୁଣ୍ଡି ମାରିଛନ୍ତି । ପ୍ରକାଶନ ସଂସ୍ଥାର ସୁଶ୍ରୀ କବିତା ପାତ୍ର ବହୁ ଯତ୍ନରେ ବହି ଫର୍ମାଟ୍‌ରେ ସଜେଇଛନ୍ତି । ଦୁହିଁଙ୍କୁ ମୋର ଧନ୍ୟବାଦ ।

ମହୀଶୂରସ୍ଥ କେନ୍ଦ୍ରୀୟ ଭାରତୀୟ ଭାଷା ସଂସ୍ଥାନର ଅନୁଦାନ ବିଭାଗ ଏହି ବହିକୁ ଛାପିବା ପାଇଁ କିଛି ଆର୍ଥିକ ସହାୟତା କରିଛନ୍ତି । ତେଣୁ ଏହି ବିଭାଗର ମୁଖ୍ୟ ଡକ୍ଟର୍ ଏଲ୍. ରାମମୂର୍ତ୍ତି (Dr. L. Ramamoorthy) ଓ ଅନ୍ୟ କର୍ମଚାରୀମାନଙ୍କଠାରେ ମୋର ବିଶେଷ କୃତଜ୍ଞତା ପ୍ରକାଶ କରୁଛି । ଆର୍ଥିକ ଅନୁଦାନ ନିମନ୍ତେ ଯାମିନ୍ଦାରଭାବେ ଅମୋମ୍ ନନ୍ଦରାଜ ମୀତେ (Amom Nandaraj Meetei), ବି.ଏମ୍. ଲିଙ୍ଗରାଜ (B.M. Lingaraj) ଓ ସାକ୍ଷୀଭାବେ ରୂପେଶ ରାଇ (Rupesh Rai), ମାନସା ଜି.(Manasha G.) ବହୁ ସହୋଯୋଗ କରିଛନ୍ତି ।

ଭୁବନେଶ୍ୱରର 'ଏଥେନା ବୁକ୍‌ସ୍' ପ୍ରକାଶନର ରାଜକିଶୋର ଦାସ ସ୍ୱଭାବତଃ ଜଣେ ଲେଖକ ଆଉ ଗୁଣଗ୍ରାହୀ ବି । ମହୀଶୂରର ଭାଷା ସଂସ୍ଥାନ ଅନୁଦାନ ଦେବା ଜାଣିବାର ବହୁ ଆଗରୁ ଏହି ବହିକୁ ଛାପିବାରେ ସେ ବହୁ ଆଗ୍ରହ ଦେଖାଇଛନ୍ତି । ତାଙ୍କ ସହିତ ଯୋଗାଯୋଗ କରିବାରେ ମୋର ହିତାକାଂକ୍ଷୀ, କବି ଅକ୍ଷୟ ବେହେରା, ସାମ୍ବାଦିକ ବନ୍ଧୁ ସୁଶାନ୍ତଙ୍କ ପରାମର୍ଶ ଉଲ୍ଲେଖଯୋଗ୍ୟ । ବିଭିନ୍ନ ସମୟରେ ଡ. ମହେଶ୍ୱର ମହାନ୍ତି, ଡ. କିଶୋର ଚନ୍ଦ୍ର ଦାସ ଓ ଙ୍ଗ. ପ୍ରଭାକର ସ୍ୱାଇଁ ମୋ ଲେଖାଲେଖି ଦିଗରେ ଉତ୍ସାହ ଦେଇଆସିଛନ୍ତି । ସମସ୍ତଙ୍କୁ ମୋର କୃତଜ୍ଞତା ପ୍ରକାଶ କରୁଛି ।

ପ୍ରଭୋମ୍ କୁମାର ମହାନ୍ତି

## ଅଭିମତ

**ଡ. ଗଗନେନ୍ଦ୍ର ନାଥ ଦାଶ**



ଅବସରପ୍ରାପ୍ତ ପ୍ରଫେସର, ଭାଷାବିଜ୍ଞାନ ବିଭାଗ
ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ, ବ୍ରହ୍ମପୁର, ଓଡ଼ିଶା
**ଏବେକା ଠିକଣା :**
୩୨୪, ଶ୍ରୀରାମ ନଗର, ଭୁବନେଶ୍ୱର, ଓଡ଼ିଶା
website : htpp://gndash.webs.com/

ଶ୍ରଦ୍ଧେୟ ସନ୍ତୋଷ କୁମାରଙ୍କ 'ଭାଷା ଜିଜ୍ଞାସା' ପ୍ରକୃତରେ ଓଡ଼ିଆ ସାହିତ୍ୟସାଧନା ଭାଷାଚର୍ଚ୍ଚା କ୍ଷେତ୍ରରେ ବିପୁଳ ଆଗ୍ରହ ଦେଖାଇଥିବା ତଥା କୃତିତ୍ୱ ଅର୍ଜନ କରିଥିବା ଶ୍ରୀଯୁକ୍ତ ପ୍ରଫୁଲ୍ଲ କୁମାର ତ୍ରିପାଠୀଙ୍କର ସାହିତ୍ୟିକ ବ୍ୟକ୍ତିତ୍ୱ ତଥା ଭାଷାଭାବନା ଓ ଭାଷାଚର୍ଚ୍ଚାର ଏକ ସଂକ୍ଷିପ୍ତ, ସଶ୍ରଦ୍ଧ ଓ ପ୍ରୀତିପୂର୍ଣ୍ଣ ପରିଚୟାତ୍ମକ ଆକଳନ । ପୁସ୍ତକଟି ଅବଶ୍ୟ କ୍ଷୁଦ୍ର; କିନ୍ତୁ ଆକଳନର ବୈଚିତ୍ର୍ୟରେ ସମୃଦ୍ଧ ଏହି ପୁସ୍ତକ ଯେପରି ସେଇ କ୍ଷୁଦ୍ରତାକୁ ଉପହାସ କରେ ।

ଶ୍ରୀଯୁକ୍ତ ତ୍ରିପାଠୀ ଭାଷାଚର୍ଚ୍ଚା ପ୍ରସଙ୍ଗରେ ଜଣେ ସ୍କୁଲ ବା କଲେଜ ଛାତ୍ରର ପ୍ରତିନିଧି ଭାବରେ ସନ୍ତୋଷଙ୍କର (ଓ ଏପରି କି ସାଧାରଣ ଲୋକଙ୍କର) ମନରେ ଉଦୟ ହେଉଥିବା ଓଡ଼ିଆ ଭାଷା ସଂପର୍କିତ କେତେକ ପ୍ରଶ୍ନ ବା ସମସ୍ୟାର ଉତ୍ତର ଓ ସମାଧାନ ସରଳ ଭାଷାରେ ଓ ଭାବରେ ପ୍ରଦାନ କରିବାରେ ତଥା ତାଙ୍କ ମନରେ ଭାଷା ସଂପର୍କିତ ଆଗ୍ରହ ସୃଷ୍ଟି କରିବାରେ ଶ୍ରୀଯୁକ୍ତ ତ୍ରିପାଠୀଙ୍କ ଦକ୍ଷତାର ପ୍ରତ୍ୟକ୍ଷ ଉଦାହରଣ ସ୍ୱରୂପ ଉପସ୍ଥାପିତ ହୋଇଛି, ସେ ସନ୍ତୋଷଙ୍କ ନିକଟକୁ ଅଗଷ୍ଟ ୧୯୯୭ରୁ ଜୁଲାଇ ୨୦୦୫ ମଧ୍ୟରେ ଲେଖିଥିବା ୩୧ଗୋଟି ପ୍ରଶ୍ନର ଉତ୍ତରରେ ଲିଖିତ ୩୧ଗୋଟି ଚିଠି । ଏ ଚିଠିଗୁଡ଼ିକ ଲେଖାହୋଇଥିବାର ପୃଷ୍ଠଭୂମି ମଧ୍ୟ ରଚିତ ହୋଇଛି 'ପଚିଶ ପଇସିଆ ଚିଠି ଓ ମୋର ଭାଷା ଶିକ୍ଷା' ଓ 'ବହିର ଜାତକ' ଶୀର୍ଷକ ବିଭାଗ ଦୁଇଟିରେ । ମୁଖ୍ୟତଃ ତାହାକୁ ହିଁ ଉପସ୍ଥାପନ କରିବାପାଇଁ ପୁସ୍ତକଟି ପ୍ରସ୍ତୁତ ହୋଇଛି ବୋଲି ଆପାତତଃ ମନେ ହେଲେ ହେଁ, ପୁସ୍ତକଟିର ପରିଶିଷ୍ଟାବଳିରେ ପ୍ରଦତ୍ତ 'ତ୍ରିପାଠୀଙ୍କ ଜୀବନ ଓ ସାହିତ୍ୟ', 'ତ୍ରିପାଠୀଙ୍କ ଭାଷା ଖେଳ' ଓ 'ପ୍ରଫୁଲ୍ଲ ଭାବକୋଷ' ମାଧ୍ୟମରେ ବି ଶ୍ରୀଯୁକ୍ତ ତ୍ରିପାଠୀଙ୍କ ସାମଗ୍ରିକ ସାହିତ୍ୟ ସାଧନା ଓ ଭାଷାଚର୍ଚ୍ଚା ସଂପର୍କରେ ସଂକ୍ଷିପ୍ତ ପରିଚୟାତ୍ମକ ଆକଳନ କରାଯାଇଛି ।

ତେବେ ଭାଷା ସମ୍ପର୍କିତ ଯେ କୌଣସି ଆଲୋଚନା ପ୍ରାୟ ସାଧାରଣ ପାଠକର ଆଗ୍ରହ ଉତ୍ପାଦନରେ ଅସମର୍ଥ । ସମ୍ପୂର୍ଣ୍ଣ ବସ୍ତୁନିଷ୍ଠତାର ସଚେତନ ପ୍ରଚେଷ୍ଟା ସହ କଠୋର ଯୌକ୍ତିକତା ଭାଷା ଚର୍ଚ୍ଚାର ଭିତ୍ତିପ୍ରସ୍ତର ହୋଇଥିବାରୁ ଏପରି ହୁଏ । ପୁଣି ସାଂପ୍ରତିକ କାଳରେ ତାର ଆଉ ଏକ କାରଣ ସୃଷ୍ଟି ହୋଇଛି । ଭାଷାବିଜ୍ଞାନରେ ତାଲିମ ନେଇଥିବା ବ୍ୟକ୍ତିମାନେ - ଆଉ ସେମାନଙ୍କ ମଧ୍ୟରେ ମୁଁ ବି ଅଛି - ପ୍ରାୟତଃ ତାହା ଅତି ଜଟିଳ ଓ ଗହନ କଥା ବୋଲି କେବଳ କହନ୍ତି ନାହିଁ, ଭାଷାଚର୍ଚ୍ଚା ପ୍ରସଙ୍ଗରେ ଅନାବଶ୍ୟକଭାବରେ ନୂତନ ନୂତନ ପରିଭାଷା ତିଆରି କରିବା ଓ ବ୍ୟବହାର କରିବାର ପ୍ରବଣତା ସହ ବକ୍ତବ୍ୟକୁ ଉପସ୍ଥାପନ କରିବା ସମୟରେ ତାହାକୁ ଦୁର୍ବୋଧ୍ୟ କରିବାପାଇଁ ସଚେତନ ଉଦ୍ୟମ କରନ୍ତି ବୋଲି ମନେ ହୁଏ । ସେପରି କରି ତାହାକୁ ସାଧାରଣ ପାଠକ ନିକଟରେ ଦୁର୍ବୋଧ୍ୟ କଲେ ପାଠକ, ବିଶେଷ ଭାବରେ ବୁଦ୍ଧିଜୀବୀ ମହଲରେ, ନିଜର ମର୍ଯ୍ୟାଦା ଓ ପ୍ରତିଷ୍ଠା ବୃଦ୍ଧି ପାଇବାର ପ୍ରତ୍ୟାଶାରୁ ସେପରି କରାଯାଏ ବୋଲି ବେଳେବେଳେ ଧାରଣା ହୁଏ । (ଅବଶ୍ୟ ମୋର ସେପରି ଧାରଣା ଭୁଲ ବି ହୋଇପାରେ) । ତେବେ ଭାଷା ସମ୍ପର୍କିତ ଆଲୋଚନା ଅତ୍ୟନ୍ତ ସରଳ ଭାଷାରେ ଓ ଭାବରେ କରାଯାଇପାରେ । ଓଡ଼ିଆ ଭାଷାରେ ସେ କ୍ଷେତ୍ରରେ ସ୍ୱର୍ଗତ ଗୋଲୋକ ବିହାରୀ ଧଳ ଜଣେ ପଥ-ପ୍ରଦର୍ଶକର ଭୂମିକା ଗ୍ରହଣ କରିଥିଲେ । ଆମେରିକୀୟ ଭାଷାବିଜ୍ଞାନୀ Robert A. Hall, jrଙ୍କର Leave Your Language Alone ନାମକ ପୁସ୍ତକ ସେ କ୍ଷେତ୍ରରେ ଅନ୍ୟ ଏକ ସାର୍ଥକ ଉଦାହରଣ । ଏ ପୁସ୍ତକରେ ଓଡ଼ିଆ ଭାଷାଚର୍ଚ୍ଚା କ୍ଷେତ୍ରରେ କୃତିତ୍ୱ ଅର୍ଜନ କରିଥିବା ପ୍ରଫୁଲ୍ଲ କୁମାର ତ୍ରିପାଠୀଙ୍କର ସନ୍ତୋଷ କୁମାରଙ୍କ ନିକଟକୁ ଲେଖିଥିବା ଚିଠିତକ ମଧ୍ୟ ତାହାର ସାର୍ଥକ ଉଦାହରଣ । ତେଣୁ ସ୍ମୃତି ଜିଜ୍ଞାସାର କେତେକ ସହୃଦୟ ପାଠକ ନିଶ୍ଚୟ ବାହାରିବେ ଓ ଶ୍ରୀଯୁକ୍ତ ତ୍ରିପାଠୀଙ୍କର ଉତ୍ତର ଓ ସମାଧାନ ବହୁ ଛାତ୍ରଛାତ୍ରୀ ଓ ସାଧାରଣ ବ୍ୟକ୍ତିଙ୍କ ମନରେ ଥିବା ସନ୍ଦେହ ନିରାକରଣ କରିବାରେ ନିଶ୍ଚୟ ସଫଳ ହେବ । ତାହା ହିଁ ସେ ସବୁ ପ୍ରକାଶନର ଯଥାର୍ଥତା ପ୍ରତିପାଦନ କରେ ।

ସନ୍ତୋଷଙ୍କର ଜିଜ୍ଞାସାର ଯେଉଁ ସବୁ ଉତ୍ତର ଓ ସମାଧାନ ଶ୍ରୀଯୁକ୍ତ ତ୍ରିପାଠୀ ଦେଇଛନ୍ତି, ସେ ସବୁଗୁଡ଼ିକ ସମସ୍ତଙ୍କର ଗ୍ରହଣୀୟ ହୁଏତ ହୋଇନପାରେ । କୌଣସି କୌଣସି ପ୍ରସଙ୍ଗରେ ହୁଏତ ବିକଳ୍ପ ମତ ଦିଆଯାଇପାରେ । ତେବେ ଶ୍ରୀଯୁକ୍ତ ତ୍ରିପାଠୀଙ୍କ ଉତ୍ତର ଓ ସମାଧାନରେ ଯେ ସ୍ପଷ୍ଟତା, ଗଭୀର ଆନ୍ତରିକତା ଓ ନିଷ୍ଠାର ପ୍ରତିଫଳନ

ରହିଛି ତା ସ୍ୱୀକାର କରିବାପାଇଁ ହେବ । ତେବେ ଏ ସବୁ ବ୍ୟତୀତ, ଜଣେ ଅଜ୍ଞାତ ଓ ଅଖ୍ୟାତ ଛାତ୍ରର ଭାଷା-ଜିଜ୍ଞାସାକୁ ସେ ଯେପରି ବର୍ଷ ବର୍ଷ ଧରି ଧାରାବାହିକଭାବରେ ସମ୍ମାନ ଦେଇଚାଲିଛନ୍ତି ମୋ ଦୃଷ୍ଟିରେ ତାହା ହେଉଛି ଶ୍ରୀଯୁକ୍ତ ତ୍ରିପାଠୀଙ୍କ ବ୍ୟକ୍ତିତ୍ୱର ପରମ ଆକର୍ଷଣୀୟ ଓ ମହନୀୟ ଦିଗ । ତାହା ମାଧ୍ୟମରେ ହିଁ ତାଙ୍କର ଭାଷାପ୍ରୀତିକୁ ସହଜରେ ଆକଳନ କରିହୁଏ । ମୁଁ ତ ତା ଆଦୌ କରିପାରିନଥାନ୍ତି ।

ସନ୍ତୋଷ କୁମାର ସେଇ ୩୧ ଗୋଟି ଚିଠିକୁ ତାଙ୍କ ଜୀବନର ଅମୂଲ୍ୟ ସଂପଦ ବୋଲି ମନେକରିବାରେ ଓ ତାହାକୁ ସମସ୍ତଙ୍କ ଅବଗତି ପାଇଁ ପ୍ରକାଶ କରିବା ମାଧ୍ୟମରେ ଶ୍ରୀଯୁକ୍ତ ତ୍ରିପାଠୀଙ୍କୁ ତାଙ୍କର ପ୍ରୀତି-ଅର୍ଘ୍ୟ ଅର୍ପଣ କରିବାର ଯଥେଷ୍ଟ ଯଥାର୍ଥତା ରହିଛି । ମୁଁ ସନ୍ତୋଷଙ୍କ କ୍ଷେତ୍ରରେ ଥିଲେ ତାହା ହିଁ କରିବାର ପ୍ରଚେଷ୍ଟା କରିଥାଆନ୍ତି । ପୁଣି ସନ୍ତୋଷଙ୍କର ବକ୍ତବ୍ୟ ମଧ୍ୟରେ ଭାଷାର ଆଞ୍ଚଳିକ ଓ/ବା ଗୋଷ୍ଠୀଗତ ଭିନ୍ନତାର ସ୍ପର୍ଶ ତାହାକୁ ଯେପରି କରିପାରିଛି ସ୍ୱାଦ୍ୟ ସେହିପରି ତାଙ୍କର 'ଛେଚା' ଖାଇବାର ବିବରଣ ମଧ୍ୟ ସେଇ ତରୁଣ ଛାତ୍ରଟି ପ୍ରତି ମନକୁ କରେ ସହାନୁଭୂତିଶୀଳ ।

ପରିଶେଷରେ ଶ୍ରୀଯୁକ୍ତ ତ୍ରିପାଠୀଙ୍କର ସାହିତ୍ୟସାଧନା ଓ ଭାଷାଚର୍ଚ୍ଚାର ଯଥାର୍ଥ ଆକଳନ ହେଉ ଓ ସେ ଦିଗରେ ସନ୍ତୋଷଙ୍କର ଏଇ ପୁସ୍ତକ ସହାୟକର ଭୂମିକା ଗ୍ରହଣ କରୁ ବୋଲି କାମନା କରୁଛି ।

୨୪.୧୨.୨୦୧୩ ଗଜେନ୍ଦ୍ର ନାଥ ଦାସ

# ବହିର ଜାତକ

ତ୍ରିପାଠୀ ସାରଙ୍କଠାରୁ ପ୍ରାପ୍ତ ସମୁଦାୟ ୩୧ଟି ଚିଠି ମସିହା, ମାସ ଓ ତାରିଖ କ୍ରମାନୁସାରେ ଏ ବହିରେ ସ୍ଥାନିତ ହୋଇଛି । ଗୋଟିଏ ଚିଠି ସେ ମୋତେ ଲେଖିଥିଲେ/ ପଠାଇଥିଲେ ବି ମୁଁ ପାଇନାହିଁ । ତାଙ୍କର ୧.୬.୨୦୦୧ରେ ଲିଖିତ ଚିଠିରୁ ଏହା ସୂଚନା ମିଳେ । କେବଳ ଗୋଟିଏ ଚିଠି କାହିଁକି ଆଉ କେତୋଟି ମଧ୍ୟ ମୋତେ ମିଳିପାରିନାହିଁ, ଏହା ଅନୁମାନ କରାଯାଇପାରେ । ତାଙ୍କୁ ଲେଖିଥିବା ଚିଠିଗୁଡ଼ିକର ପାଠ ମୁଁ ଭୁଲିଯାଇଥିବାରୁ ଏଠାରେ ପ୍ରତି ଚିଠିର ଆରମ୍ଭରେ ଥିବା ପ୍ରଶ୍ନ, ତାଙ୍କ ଉତ୍ତରକୁ ଭିତ୍ତିକରି ଓ ମୋ ସ୍ମୃତିରୁ ମନେ ପକାଇ ଲେଖିଛି । ପ୍ରଶ୍ନରେ ଯଦି କିଛି ଅସଂଗତି ଥାଏ, ପାଠକେ ନିଜର ବିଚାର-ବୁଦ୍ଧି ପ୍ରୟୋଗ କରିବାକୁ ଅନୁରୋଧ ।

ଏହି ଚିଠିଗୁଡ଼ିକ ମଧ୍ୟରୁ ଅଧିକାଂଶ ମୋ ଗାଁ ଦୁଆ ଠିକଣାରେ ଆସିଥିଲା । ମୁଁ କଟକରେ ଥିବାବେଳେ କେତୋଟି ଚିଠି, ମାର୍ଫତ- ଡକ୍ଟର୍ ଟହଲି ଚରଣ ମହାନ୍ତି, ମହାନ୍ତି ଲେନ୍, ଚାଉଳିଆଗଞ୍ଜ ଏବଂ ଶିବପ୍ରସାଦ ଦାସ, ଆନନ୍ଦ ବିହାର, ଚାଉଳିଆଗଞ୍ଜ, କଟକ; ଏହି ଦୁଇଟି ଠିକଣାରେ ଆସିଥିଲା ।

ଉତ୍ତରଗୁଡ଼ିକୁ ନେଇ ଆବଶ୍ୟକସ୍ଥଳେ ପାଦଟୀକାରେ ବା ଅନ୍ୟତ୍ର କିଛି କିଛି ମନ୍ତବ୍ୟ ଦିଆଯାଇ ପାରିଥାନ୍ତା; କିନ୍ତୁ ମୋତେ ଛାତ୍ରାବସ୍ଥାରେ ଉତ୍ସାହ ଦେଇଥିବା ଚିଠିଗୁଡ଼ିକୁ ଏବେ ପାଦଟୀକା ବହୁଳ କରି ପାଣ୍ଡିତ୍ୟ ଦେଖେଇବାର କାମ ମୁଁ କରିନାହିଁ । କେବଳ ତାଙ୍କର ଚିଠିଗୁଡ଼ିକ ପାଠକଙ୍କ ପାଇଁ ଉପସ୍ଥାପିତ କରିଛି ମାତ୍ର । ଚିଠିଗୁଡ଼ିକରେ ଥିବା ତାଙ୍କ ବନାନ ଶୈଳୀ ସେହିଭଳି ରହିଛି । ସେଥିରେ ମୁଁ ଟିକେ ହେଲେ ହାତ ମାରିନି ।

ଏହି ଚିଠିଗୁଡ଼ିକର ଅଧିକାଂଶ ପାଠ ଅନ୍ୟତ୍ର ମଧ୍ୟ ଭିନ୍ନ ଭାବରେ ପ୍ରକାଶ ପାଇଛି । ଏହି ଚିଠିଗୁଡ଼ିକରୁ ପାଠକେ ତ୍ରିପାଠୀଙ୍କର ନୂଆ ବକ୍ତବ୍ୟ ବହୁ କମ୍ ପାଇବେ; କିନ୍ତୁ ଭାଷାଚର୍ଚ୍ଚା କରିବାର ଏକ ନୂଆ ଶୈଳୀ ସହିତ ପାଠକମାନେ ଯେ ପରିଚିତ ହେବେ; ଏହା ନିଃସନ୍ଦେହ । ସାହିତ୍ୟ ଚର୍ଚ୍ଚାରେ ଚିଠିକୁ ନେଇ ଓଡ଼ିଆ ଭାଷାରେ କିଛି

ବହି ପ୍ରକାଶ ପାଇଛି; କିନ୍ତୁ ଚିଠିରେ ଭାଷାଚର୍ଚ୍ଚାକୁ ନେଇ ଏହା ଓଡ଼ିଆ ଭାଷାରେ ଏପରିକି ଅନ୍ୟ ଭାରତୀୟ ଭାଷାରେ ବି ପ୍ରଥମ ବହି! 'ଦି କେଂବ୍ରିଜ୍ ଏନ୍‌ସାଇକ୍ଳୋପେଡିଆ ଅଫ୍ ଲାଙ୍ଗୁଏଜ୍'ର ଲେଖକ ତଥା ବିଶ୍ୱବିଖ୍ୟାତ ଭାଷାବିଜ୍ଞାନୀ ଡାଭିଡ୍ କ୍ରିଷ୍ଟାଲ୍ (David Crystal), ମୋର ପ୍ରଶ୍ନରେ ଏମିତିକା ଭାଷାତାତ୍ତ୍ୱିକ ପତ୍ରାବଳି ବହି ସଂପର୍କରେ ସେ ଜାଣିନାହାନ୍ତି ("I don't know of any such book") ବୋଲି ମୋତେ ୨୦୧୩ ଡିସେମ୍ବର ମାସ ୨୭ ତାରିଖରେ ଇ-ମେଲ୍‌ରେ ଜଣାଇଛନ୍ତି ।

ଏହି ବହିର 'ପରିଶିଷ୍ଟାବଳି'ରେ ତ୍ରିପାଠୀ ସାର୍‌ଙ୍କ ବିଷୟରେ ସ୍ଥାନିତ କିଛି ସୂଚନା ତାଙ୍କ ସହ ଇଜିରିବିଜିରି ହୋଇ ଲାଗିବା ପରେ ମୋତେ ବହୁ କଷ୍ଟରେ ମିଳିଛି ଏବଂ ଆଉ କିଛି ସୂଚନା ତାଙ୍କ ସଂପର୍କରେ ଆସିବା ପରେ ମୁଁ ଯାହା ଜାଣିଛି; ତାହା ସ୍ମୃତିରୁ ମନେପକାଇ ଲେଖିଛି । ତାଙ୍କ ଭାଷାତାତ୍ତ୍ୱିକ ବହିଗୁଡ଼ିକ ସଂପର୍କିତ ଲିଖିତ ପରିଚୟ ବା ସୂଚନାସବୁ ନିର୍ଦ୍ଦିଷ୍ଟ ବହିର ଆଧାରରେ ପ୍ରସ୍ତୁତ ହୋଇଛି । ତେବେ ବହିର ସୂଚନାଗୁଡ଼ିକୁ ସଜେଇ ଲେଖିବା ବେଳେ କେଉଁଠି ଜାଁ ଭାଁ ସୂତାଏ ଭୁଲ୍-ଭଟକା ଥାଇପାରେ । ସେଥିପାଇଁ ମୁଁ ଆଗୁଆ ଦୁଃଖ ପ୍ରକାଶ କରୁଛି । ମୁଁ ଓଡ଼ିଶା ବାହାରେ ରହୁଥିବାରୁ ପ୍ରୁଫ୍ ସଂଶୋଧନ ଓ ଫଣ୍ଟଜନିତ ସମସ୍ୟାର ସମ୍ମୁଖୀନ ହୋଇଛି । ତଥାପି ସଂଶୋଧନରେ ବହୁ ଯତ୍ନ ନିଆଯାଇଛି । ଯଦି କୌଣସି ତ୍ରୁଟି-ବିଚ୍ୟୁତି ଥାଏ, ଗୁଣଗ୍ରାହୀ ପାଠକମାନେ ଜଣାଇଲେ, ସମ୍ଭବ ହେଲେ ପର ସଂସ୍କରଣରେ ସେସବୁର ପରିମାର୍ଜନ କରାଯିବ ।

ଲେଖାକୁ ପୂରା ନ ପଢ଼ି ଚତୁର ମନ୍ତବ୍ୟ ଦେବା ଅପେକ୍ଷା ଥରେ ପଢ଼ି ଭଲ-ମନ୍ଦ ବାରି ପାରୁଥିବା ପାଠକଙ୍କୁ ମୁଁ ବହୁ ଆଦର କରେ । ଆଉ ଏଭଳି ପାଠକ ଓଡ଼ିଶାରେ ବହୁ କମ୍ ଅଛନ୍ତି ! ସେମାନଙ୍କ ମଧ୍ୟରୁ କେହି କେହି ଏ ବହିଟି ପଢ଼ି ଅନୁପ୍ରେରିତ ହୋଇ ଯଦି ଓଡ଼ିଆ ଭାଷାର ଉନ୍ନତି ପାଇଁ କାମ କରିବାକୁ ମନ ବଳାନ୍ତି; ତେବେ ତାହା ହେବ ମୋର ପରିଶ୍ରମର ପ୍ରକୃତ ମୂଲ୍ୟ ।

**ସନ୍ତୋଷ କୁମାର ମହାନ୍ତି**

**ଏବେକା ଠିକଣା :**
ଏଲ୍.ଡି.ସି.-ଆଇ.ଏଲ୍.ବିଭାଗ,
କେନ୍ଦ୍ରୀୟ ଭାରତୀୟ ଭାଷା ସଂସ୍ଥାନ,
ମାନସଗଙ୍ଗୋତ୍ରି, ମହୀଶୂର,
କର୍ଣ୍ଣାଟକ, ୫୭୦୦୦୬

**ଗାଁ ଠିକଣା :**
ଦୁଆ, 'ଦୁର୍ଗା ନିବାସ',
ବୋରିକିନା, ଜଗତସିଂହପୁର,
ଓଡ଼ିଶା, ୭୫୪୧୧୦

ଯୋଗାଯୋଗ : ୦୮୮୮୪୬୦୭୪୦୬
e-mail : santosh.odisha@gmail.com

# ପଚିଶ ପଇସିଆ ଚିଠି ଓ ମୋର ଭାଷା ଶିକ୍ଷା

ପ୍ରକୃତରେ, ମୁଁ ଓଡ଼ିଆ ଭାଷାପାଇଁ ଆଜି ଯାଏ ସେମିତି କିଛି ବିରାଟ କାମ କରିନାହିଁ । ତେଣୁ ଏପରି ଶିରୋନାମା ଥାଇ ମୋର ବକ୍ତବ୍ୟ ଓ ଚିଠିଗୁଡ଼ିକୁ ସଂକଳିତ କରି ବହି କରିବାରେ କେହି କେହି ପଛରେ ଟୁପୁରୁଟାପୁରୁ ହୋଇପାରନ୍ତି । କହି ପାରନ୍ତି, ଏ ବୟସରେ ଏକଥା ନ ଲେଖି ବୁଢ଼ା ବେଳେ ଲେଖିଥିଲେ ଚଳିଥାଆନ୍ତା । ଏଭଳି ଚିନ୍ତା କରୁଥିବା ବ୍ୟକ୍ତିଙ୍କ ସହିତ ମୋର କୌଣସି ଯାଏ ଆସେ ନାହିଁ । ଜୀବନର ଅନୁଭବକୁ ଯେ ସଦାବେଳେ ବଙ୍କୁଲି ବାଡ଼ି ଧରି କୁହାଯିବ ବା ଲେଖାଯିବ; ସେଥିପାଇଁ ଯେ ବର୍ଷ ବର୍ଷ ଧରି ଅପେକ୍ଷା କରିବାକୁ ପଡ଼ିବ; ସେଥିରେ ମୁଁ କାଣିଚାଏ ବିଶ୍ୱାସ କରେ ନାହିଁ । ଯେଉଁ କଥାକୁ ବିନା ସଂକୋଚରେ ଅନ୍ୟମାନଙ୍କୁ କୁହାଯାଇ ପାରିବ; ତାହାକୁ ସେହିପରିଭାବରେ ମଧ୍ୟ ସେହି ସମୟରେ ଲେଖାଯାଇ ପାରିବ । କୁହାଯାଏ, କଥା ସବୁ ପବନରେ ଉଡ଼ିବୁଲିବା ଅପେକ୍ଷା ଲିପିବଦ୍ଧ ହେଲେ ତା'ର ମୂଲ୍ୟ ରହେ । ତେବେ ମୋର ଏହି ଲିପିବଦ୍ଧ ବକ୍ତବ୍ୟରେ କେତେ ମୂଲ୍ୟ ଅଛି; ତାହା ମୋ ଅପେକ୍ଷା ଅନ୍ୟମାନେ କହିଲେ ଭଲ ।

ମୁଁ ପଢ଼ା ପରେ କିଛି ବର୍ଷ ହେବ ଓଡ଼ିଆ ଭାଷାପାଇଁ କାର୍ଯ୍ୟ କରୁଛି । ଛୋଟମୋଟ ହୋଇ ଅଳ୍ପ କେତୋଟି ଭାଷା ଲେଖା ମୋର ପ୍ରକାଶ ପାଇଛି । ପିଲାଦିନରୁ ଓଡ଼ିଆ ଭାଷା ପ୍ରତି ଥିବା ମୋର ଶ୍ରଦ୍ଧା, ମମତା ଆଜି ବି ସେମିତି ଅମଳିନ ରହିଛି । ସେହି ଶ୍ରଦ୍ଧା, ମମତା, ଭାଷା ପ୍ରେମ ମୁଁ ପ୍ରଥମେ ଦେଖିଛି ପ୍ରଫୁଲ୍ଲ କୁମାର ତ୍ରିପାଠୀଙ୍କ ଠାରେ । ତାଙ୍କ ସହିତ କିଛି ପତ୍ରାଳାପ ବା ଭାବର ଆଦାନ-ପ୍ରଦାନରେ ମୁଗ୍ଧ ହୋଇ ମୁଁ ପିଲାଦିନୁ ଓଡ଼ିଆ ଭାଷା ପ୍ରତି ମନ ବଳାଇଛି । ଭାଷାକୁ ନେଇ ମୋ ଜୀବନରେ ଛୋଟ ଛୋଟ ଉପଲବ୍ଧି ମୋତେ କିଛି ପରିମାଣରେ ବି ପୁଲକିତ କରିଛି । ଏହି ଲେଖାରେ ଆମ ଦୁହିଙ୍କ ପତ୍ରାଳାପ, ଭାଷାତାତ୍ତ୍ୱିକ ସଂପର୍କ ଓ ପୃଷ୍ଠଭୂମିରେ ଥିବା କିଛି ଉପଲବ୍ଧି ମୁଁ ଉଲ୍ଲେଖ କରୁଛି ।

୧୯୯୭ ମସିହା । ଦୈନିକ 'ସମ୍ବାଦ'ର ସଂପାଦକ ସୌମ୍ୟରଞ୍ଜନ ପଟ୍ଟନାୟକଙ୍କ ନେତୃତ୍ୱ, ଡକ୍ଟର୍ ପ୍ରଫୁଲ୍ଲ କୁମାର ତ୍ରିପାଠୀ, ଜିତେନ୍ଦ୍ର ନାରାୟଣ ଦାଶ (ଦାଶ ବେନହୁର) ଓ ଅନ୍ୟମାନଙ୍କ ସହଯୋଗରେ ନବମ, ଦଶମ ଶ୍ରେଣୀ ପିଲାମାନଙ୍କ ପାଇଁ 'ଶୁଦ୍ଧ ଓଡ଼ିଆ ଲିଖନ ପରୀକ୍ଷା' ମାର୍ଚ୍ଚ ମାସ ୨ ତାରିଖରେ ଓଡ଼ିଶା ସାରା ଆରମ୍ଭ ହେଉଥାଏ । ମୋର ସେତେବେଳେ ଦଶମ ଶ୍ରେଣୀ ଶେଷ ହେବା ଉପରେ । ଦିନେ ପୁନ ଦାଦା କହିଲେ "'ସମ୍ବାଦ'ରେ 'ଶୁଦ୍ଧ ଓଡ଼ିଆ ଲିଖନ ପରୀକ୍ଷା' କଥା ବାହାରିଛି । ତୁ ପରୀକ୍ଷା ଦେ; ତୋର ହେଇଯିବ ।" ମୁଁ ୨ ତାରିଖରେ ପରୀକ୍ଷା ଦେଲି, ଫଳ ବାହାରିଲା ସେହି ବର୍ଷ ଜୁଲାଇ ମାସ ୧୩ ତାରିଖରେ ଓ ପରେ ପୁରସ୍କାର ସ୍ୱରୂପ ଶହେ ଟଙ୍କା ସହ ପ୍ରମାଣପତ୍ର ପାଇଲି ।

ସେତେବେଳେ ଶହେ ଟଙ୍କା ଓ ପ୍ରମାଣପତ୍ର ପାଇବା ଅପେକ୍ଷା ମୋ ପାଇଁ ବଡ଼ କଥା ଥିଲା ତ୍ରିପାଠୀ ସାର୍‌ଙ୍କ 'ସମ୍ବାଦ'ରେ ପ୍ରକାଶ ପାଉଥିବା ଦୈନିକ ସ୍ତମ୍ଭ 'ଭାଷା ଭାବନା'କୁ ସବୁଦିନେ ପଢ଼ିବା । ଭାଷା ସଂପର୍କିତ ତାଙ୍କର ଅନୁସନ୍ଧିତ୍ସା ଓ ବିଶ୍ଳେଷଣ ମୋତେ ଭାରି ବଢ଼ିଆ ଲାଗୁଥାଏ । 'ସମ୍ବାଦ'ର ମୁଖ୍ୟ ସମ୍ବାଦ ଅପେକ୍ଷା 'ଭାଷା ଭାବନା' ଥିଲା ମୋ ପାଇଁ ସବୁଠୁ ବଡ଼ ସମ୍ବାଦ । ଦିନରେ ପଢ଼ି ତାକୁ ରାତିରେ କାଟି ରଖିବା ଓ ପରେ ସେଗୁଡ଼ିକୁ ଅଠା ଦେଇ, ବହି ପରି କରି ଖରାରେ ଶୁଖେଇବା ଥିଲା ମୋର ଏକ ଆନନ୍ଦଦାୟକ କାର୍ଯ୍ୟ ।

ଏକ ଆକସ୍ମିକ ଘଟଣା ଘଟିଲା । ଆମ ଘରର ଉଚ୍ଚ-କର୍ତ୍ତୃପକ୍ଷ 'ସମ୍ବାଦ' ମଗାଇବା ବନ୍ଦ କରିଦେଲେ । ବଦଳରେ 'ଦି ନିଉ ଇଣ୍ଡିଆନ୍ ଏକ୍ସପ୍ରେସ୍' ଆସିଲା । ପ୍ରକୃତରେ 'ସମ୍ବାଦ' କାଗଜ ଘରକୁ ନ ଆସିବା ମୋ ପାଇଁ ଏକ ଦୁଃସମ୍ବାଦ ଥିଲା । ମୋର ଅଙ୍ଗୁର୍ ପରି ଥିବା ତାଜା ମନଟି ଶୁଖି ପୂରା କିସ୍‌ମିସ୍ ପରି ହୋଇଗଲା । ଏହାର କିଛି ଦିନ ଆଗରୁ ଡକ୍ଟର୍ ତ୍ରିପାଠୀଙ୍କର ଠିକଣା ଥାଇ 'ସମ୍ବାଦ'ରେ ଏକ ଅଭିମତ ପ୍ରକାଶ ପାଇଥିଲା । ସେହି ଠିକଣାରେ ମୁଁ ଡକ୍ଟର୍ ତ୍ରିପାଠୀଙ୍କୁ ଚିଠିଟିଏ ଲେଖିଲି- ଆପଣ 'ଭାଷା ଭାବନା' କାଟିକରି ପଠାଇଲେ ମୁଁ ଖୁସି ହୁଅନ୍ତି । କିଛି ଦିନ ପରେ ତାଙ୍କର ଉତ୍ତର ପାଇଲି । ସେତିକିବେଳେ ମୁଁ ସୁନନ୍ଦ ଭାଇଙ୍କ ଖଳାରେ ଗୁଲି ଖେଳୁଥିଲି । ସେ ଚିଠିର ଉତ୍ତର ଦେବେ ବୋଲି ମୁଁ ଜମାରୁ ଭାବି ନ ଥିଲି । ସୁନ୍ଦର ହସ୍ତାକ୍ଷରରେ ସୁନ୍ଦରଭାବେ ମନା କରିଛନ୍ତି ପଠାଇବା ସମ୍ଭବ ନୁହେଁ । ଅବଶ୍ୟ ନା-ସୂଚକରେ ପଚିଶ ପଇସାର ଚିଠିଟି ବେଶ୍ ଉତ୍ସାହପୂର୍ଣ୍ଣ ଥିଲା ।

ପ୍ରଫୁଲ୍ଲ ସାର୍‌ଙ୍କ କହିବା ମୁତାବକ ଅନ୍ୟ ଗ୍ରାହକଙ୍କଠାରୁ ସଂଗ୍ରହ କରିବା ସେତେବେଳେ ସମ୍ଭବ ହୋଇପାରିଲା ନାହିଁ । କେଉ ଜଣଙ୍କଠାରୁ ସଂଗ୍ରହ କରିବାକୁ ମୁଁ ଚେଷ୍ଟା କରିଥିଲି । କାହାକାହା ଘରକୁ ଗଲେ କହିବେ "ଯା... ଯା... ଦୋକାନରେ ରହିଗଲା ।" ଦୋକାନରେ ପହଞ୍ଚିଲେ ସେ ପୃଷ୍ଠାଟି ମିଳିବନି ବା କାହାକୁ ସଉଦା ସହିତ ପୁଡ଼ିଆ ହୋଇ ଦିଆ ସରିଥିବ । ଏମିତି ଛଅ ସାତଟା ଦୋକାନରେ ମୁହଁ ମାରିବା ପରେ ଦୋକାନୀଗଣ ଅବଶ୍ୟ ମୋର ସାମୟିକ ଚିହ୍ନା ହୋଇଗଲେ; ହେଲେ 'ଭାଷା ଭାବନା'ର କୌଣସି ଦର୍ଶନ ମିଳିଲା ନାହିଁ । ଏମିତି ବହୁ ହରକତ୍ ହେବାକୁ ପଡ଼ିଲା । ମୁଁ ଭାଷା ଭାବନାରେ ପୂରା ବାଇଆ ହୋଇଗଲି । ପ୍ରଫୁଲ୍ଲ ସାର୍‌ଙ୍କଠାରୁ 'ସଂଭବ ହେବ ନାହିଁ' ଉତ୍ତର ପାଇବା ପରେ ମୋର ଚିନ୍ତା ଆହୁରି ଯୋର୍ ଧରିଲା ।

କ'ଣ କରାଯାଇପାରେ ଭାବିଲି । ମୁଁ ଅଷ୍ଟମରେ ପଢୁଥିବା ବେଳେ 'ସମ୍ବାଦ'ର 'ରବିବାର' ସାପ୍ତାହିକ ପତ୍ରିକାରେ ମୋର ଏକ ଛୋଟ ପିଲାଙ୍କ ଗପ 'ଚତୁର ବିଲୁଆ' ପ୍ରକାଶ ପାଇଥିଲା । ପୁଣି ପତ୍ରିକାର 'କହିଲ ଦେଖି ସେ କିଏ ?' ପ୍ରଶ୍ନୋତ୍ତର ସ୍ତମ୍ଭ ପାଇଁ ସଂପାଦକଙ୍କୁ ଉତ୍ତର ପଠେଇ ପଠେଇ ଏବଂ ବିଭିନ୍ନ କାର୍ଯ୍ୟକ୍ରମର ବିବରଣୀ 'ସମ୍ବାଦ'ରୁ ମୁଁ ପଢ଼ି ସୌମ୍ୟବାବୁଙ୍କ ନାମ ସହିତ ପରିଚିତ ହୋଇଥାଏ । ଭାବିଲି 'ସମ୍ବାଦ'ର ସଂପାଦକଙ୍କୁ ଚିଠି ଲେଖିବା ଅପେକ୍ଷା ଦେଖା କଲେ ଟିକେ ହୁଅନ୍ତା । ତାଙ୍କ ଅଫିସ୍‌ରେ ସବୁତକ 'ଭାଷା ଭାବନା' ଥିବ । ସେଠାରୁ ହିଁ ସଂଗ୍ରହ କରାଯାଇପାରେ । ତେଣୁ ମନବଳ ଦୃଢ଼ କରି ମାସେ ଦେଢ଼ମାସ ଭିତରେ 'ସମ୍ବାଦ' ଅଫିସ୍ ଅଭିମୁଖେ ଯାତ୍ରା ଆରମ୍ଭ କଲି । ଦିନେ, ଆମ ବୋରିକିନାରୁ ବସ୍ ଚଢ଼ି ଭାୟା ବାଦାମବାଡ଼ି ଦେଇ ଯାଇ ଭୁବନେଶ୍ୱରରେ ହାଜର୍ । ଘର ଲୋକଙ୍କ ଭାବିବା ଅନୁଯାୟୀ ମୁଁ କଲେଜ ଯାଇଥିବି । ମୁଁ ଘର ଲୋକଙ୍କ ଭାବନାକୁ ଠକି 'ଭାଷା ଭାବନା' ପାଇଁ ଯେ ଖରାତରାରେ ଧାଉଁଛି, ଜାଣିଲେ ଛେଚା ଖାଇବି ନିଶ୍ଚୟ । ଘନା ଦାଇ ତ କଥା କଥାକେ କହନ୍ତି, କୁରହା ଖାଇବୁ ଆ; ପୁଣି ପିଠିରେ ବମ୍ଭେଇ ମୂଳା । ତେବେ ସେହି ଛେଚା ବା କୁରହା ଖାଇବା କିବା ବମ୍ଭେଇ ମୂଳା ଡରରେ ମୋର ତାହା ଏକ ଗୋପନ ଅଭିଯାନ ଥିଲା ।

ପଳାଶୁଣି ପାଖରେ ହେଲ୍‌ପର ଚିଲ୍ଲେଇଲା ଭୁଏଁସୋର, ଭୁଏଁସୋର... । ମୁଁ ସେଇଠି ଓହ୍ଲେଇ ପଡ଼ିଲି । ଗାଡ଼ି ମଟର ପେଁ ପାଁ । ଚଉଡ଼ା ରାସ୍ତା । କୁଆଡ଼କୁ ଗଲେ ନୂଆପଲ୍ଲୀ ପଡ଼ିବ ବୁଦ୍ଧି ବଣା । ମଣିଷ ପୂରା ନାମ ନେଲା ! ନୂଆକରି ଏକ୍‌ଲା

ଭୁବନେଶ୍ୱର ଯାଇଛି । ଆଗରୁ ଅବଶ୍ୟ ଥରେ ଅଧେ ଯାଇଥିଲି ବାପାଙ୍କ ସହିତ ହାତ ଧରି । ଥରେ ବାପା ଆଉ ଗାଁ ବାଆଜି ଅଜା ସାଙ୍ଗରେ ନକୁଳ ଅଜା ପାଖକୁ ପୁରୀ ଯାତ୍ରା, ଫେରନ୍ତା ବାଟରେ ଆମ ବିଧାୟକ ଜ୍ୟୋତିଷ ଦାସଙ୍କ ବସାରେ ମୁହଁ ମାରିବା । ଆଉ ଥରେ ବୋଧହୁଏ ଛୋଟକାଟିଆ ଓଡ଼ିଶା ଭ୍ରମଣ । ଭୁବନେଶ୍ୱର ସେତେବେଳେ ମୋ ପାଇଁ ମୋଟେ ଏତିକି । କ'ଣ କରିବି ଭାବୁଥାଏ । ଜଣେ ପାଠପଢ଼ୁଆ ବୟସ୍କ ଲୋକ ମୋ ଆଡ଼କୁ ଆସୁଥାଆନ୍ତି । ତାଙ୍କୁ ଅଟକେଇ ପଚାରିଲି । ସେ କହିଲେ, "ଏଠୁ ଥୋଡ଼ାଏ ବାଟ ଗଲେ ନୂଆପଲ୍ଲୀ । ତୁମେ 'ସମ୍ବାଦ' ଅଫିସ୍‌ରେ ତାଙ୍କୁ ଭେଟିପାର ।" ଭଦ୍ରଲୋକ ଜଣକ ବୋଧହୁଏ ନିଜ କାମରେ ତରତର ହେତୁ ସୌମ୍ୟବାବୁଙ୍କୁ ଭେଟିବାର କାରଣ ପଚାରିପାରି ନ ଥିଲେ ।

ସେତେବେଳକୁ ଭୋକରେ ପେଟ କାହିଁରେ କ'ଣ ! ବୁଲା ଫଳ ବିକାଳିଠାରୁ ସେଓଟାଏ କିଣି ଚୋବେଇଲି । ଭାବିଲି, ସୌମ୍ୟବାବୁ କ'ଣ ଭାବି ଯଦି ମନା କରିଦିଅନ୍ତି; ତେବେ ମଣିଷ ବେଏକୁ ହେବ । ଯଦି ଦେଖା କରିବି ଡେରି ହେଲେ ରହିବି କେଉଁଠି, କାହା ପାଖରେ ? ବାଟଖର୍ଚ୍ଚ, ଖାଇ ଖୋରାକି ପାଇଁ ବାପାଙ୍କ ପକେଟରୁ ଅବଶ୍ୟ ଶହେଟି ଟଙ୍କା ଚୋରା ହୋଇଛି । ତାହାକୁ 'ଚୋରା' ନ କହି 'ଲୁଚେଇକି ନବା' କହିଲେ ଟିକେ ଭଲ ଲାଗିବ । ସେତକ ଖତମ୍ ହୋଇଗଲେ ବୁଦ୍ଧି ଗୁଡୁମ୍ । ଘରେ ବି ଅତି ବେଶିରେ ବେଳବୁଡ଼କୁ ହାଜର ନ ହେଲେ ପାଞ୍ଚଣ ପାହାର ହେବାର ସମ୍ଭାବନା ଉଜ୍ଜ୍ୱଳ । ଏ ସବୁ ଭାବି ମନ ମୋର ଘୁନ୍ଦାଳି ହେଲା । ସେଇଠୁ ହାପିସାପି ହୋଇ ବସ୍‌ରେ ଉଠି ପୁଣି ବାଦାମବାଡ଼ିରେ । ବାଦାମବାଡ଼ିରୁ ବସ୍‌ରେ ପୁଣି ବୋରିକିନା ଲେଉଟାଣି, ସେଠୁ ଚାଲିଚାଲି ଦୁଆ ଗାଁକୁ । ମନ ଦୋ-ଦୋ ପାଞ୍ଚ, ପୁଣି ରୋମାଞ୍ଚ । ଘରେ କେହି ଜାଣି ପାରିଲେନି । ଅଜା ଅବଶ୍ୟ ଡାଉଟ୍‌ରେ ପଚାରିଥିଲେ, "କ'ଣ ଧନମଣି, କୁଆଡ଼େ ଯାଇଥିଲେ କି ?" ମାତ୍ର ବୃଷ୍ଟି ଭୟରେ ମୁଁ କଥାଟାକୁ ଟିକିଏ ବାଆଁରେଇ ଅଜାଙ୍କୁ ଦଉଡ଼ି ବଳାରେ ସାହାଯ୍ୟ କରିଥିଲି ।

'ଭାଷା ଭାବନା'ର ବାଇଆମି ଛାଡ଼ି ନ ଥାଏ । ପରେ ମୁଁ ଟିକେ ଗୁଷାଗୁଷି କରିବାରୁ ଘରକୁ ପୁଣି 'ସମ୍ବାଦ' ମଗାହେଲା । ମୁଁ ପୁଣି 'ଭାଷା ଭାବନା' ପଢ଼ିଲି, କାଟିଲି, ଅଠାଦେଇ ଶୁଖେଇଲି । ଯେତେବେଳେ ମୋ ମନରେ ଯେଉଁ ଭାଷାମୂଳକ ପ୍ରଶ୍ନ ଆସେ ତାକୁ ଲେଖି ତ୍ରିପାଠୀ ସାର୍‌ଙ୍କୁ ଚିଠି ଦିଏ ପୋଷ୍ଟକାର୍ଡରେ ; ମାତ୍ର ପଚିଶ ପଇସା ଖର୍ଚ୍ଚ କରି । ସେ ବି ଉତ୍ତର ପଠାନ୍ତି ସେତିକି ପଇସା ଖର୍ଚ୍ଚ କରି । ଏମିତି ଆମର ଭାଷାଚର୍ଚ୍ଚା ହୁଏ । ସେ ଅତି

ସରଳ, ମାର୍ଜିତ ଭାଷାରେ ଉତ୍ତର ଦିଅନ୍ତି । ପାଚିଲା ଅମୃତଭଣ୍ଡା ମଞ୍ଜି ପରି ତାଙ୍କ ଅକ୍ଷର ଦେଖି ମୋତେ ଭାରି ଉତ୍ସାହିତ ଲାଗେ । ଏବେ ଭାବୁଛି, ସେତେବେଳେ ତାଙ୍କ ସହିତ ମୋର ଯେପରି ପତ୍ର ବିନିମୟ ପାଠ୍ୟକ୍ରମ ଚାଲୁଥିଲା ।

ସାର୍ ୨୦୦୦ ମସିହା ମାର୍ଚ୍ଚ ମାସର ଏକ ଚିଠିରେ 'ତରୁଣ ଶବ୍ଦକୋଷ' କଥା ଲେଖିବା ପରେ ତାହାକୁ କିଣିବାପାଇଁ ଘରେ ହାତ ପତେଇବାରୁ ଓଡ଼ିଆ ପଢ଼ିବାରେ ଡିକ୍ସିନାରି କ'ଣ ଦରକାର କହି ବାପା କୁହୁକୁହୁ ହୋଇ ଦୁଇଟି ଶହେ ଟଙ୍କିଆ ନୋଟ ବାକ୍ସ ଉପରେ ଥୋଇ ସ୍କୁଲ୍ ଗଲେ । ଅବଶ୍ୟ ବଦଳରେ ସେଥରକ ମୋ ପାଇଁ ପ୍ୟାଣ୍ଟ୍, ସାର୍ଟ୍ ନ କିଣିବାକୁ ମୁଁ ନିଜଆଡୁ କହିଥିଲି । 'ତରୁଣ ଶବ୍ଦକୋଷ' କିଣିବା ପରେ ପ୍ରତିଦିନ ୩୦ ରୁ ୪୦ ପୃଷ୍ଠା ପଢ଼ି କଷ୍ଟ ଶବ୍ଦ ଓ ଶବ୍ଦାର୍ଥଗୁଡ଼ିକୁ ଖାତାରେ ଟିପି ଘୋଷିବାକୁ ଆରମ୍ଭ କଲି । ଏମିତି ଥୋଡ଼ାଏ କଲା ପରେ ପୁନ ଦାଦା ମୋର ଅଭ୍ୟାସକୁ ବୃଥା-ଶ୍ରମ ନାମ ଦେଇ ଆବଶ୍ୟକସ୍ଥଳେ ଶବ୍ଦାର୍ଥ ଦେଖିବାକୁ କହିଥିଲେ । ମୋର ଶବ୍ଦତତ୍ତ୍ୱ ଅଭ୍ୟାସ ସେତିକିରେ ମଉଳିଲା; ହେଲେ 'ତରୁଣ ଶବ୍ଦକୋଷ' କିଣିବା ପରେ ମୋର ଶବ୍ଦବୋଧ ଆଗ ଅପେକ୍ଷା ଟିକେ ବାଗେଇବାକୁ ଲାଗିଲା । ତାଙ୍କ ସହିତ ପତ୍ରାଳାପ ମଧ୍ୟରେ ମୋର ଓଡ଼ିଆ ଭାଷା ପ୍ରତି ଯେ ଅନୁରାଗ ଆସିଥାଏ; ମୁଁ ସେତେବେଳେ ଜାଣିପାରୁ ନ ଥିଲି ।

ପିଲାଦିନେ ଭାଷାକୁ ନେଇ ଆମେ ଗାଁରେ ବହୁ ମଜା କରିଛୁ । ସେଥି ମଧ୍ୟରୁ ଗୋଟିଏ ଦୁଇଟି ଏଠାରେ ଉଲ୍ଲେଖ କରାଯାଇପାରେ । ପ୍ରାୟ ସବୁଦିନ ବେଳବୁଡ଼େ ଆମ ଦାଣ୍ଡ ପିଣ୍ଡାରେ ଉଲ୍ଲାସ ଭାଇ, ଗାଁର ସୁନନ୍ଦ ଭାଇ, ଦିଜ ଭାଇ, ମାନସ ଦାଇ ଓ ରବି ଦାଇଙ୍କୁ ନେଇ କିଛି କିଛି ଆଲୋଚନା ହୋଇଥାଏ । ସେଥିରେ ଗୋଠେଶ୍ୱର ଜାଗର, ଗାଁ ଦୋଳ, କ୍ରିକେଟ ଖେଳ, ସିନେମା, ବେଙ୍ଗଳା, ଦାଣ୍ଡପୋଖରି ମାଛ, ଲୋକାଲ୍ ବିଧାୟକ, ରାଜ୍ୟ ରାଜନୀତି ସହିତ ବେଳେ ବେଳେ ଭାଷା ଚର୍ଚ୍ଚା ବି ହୁଏ । ଗାଁର କିଛି ପଢ଼ାପିଲାଙ୍କ ଭୁଲ୍ ଉଚ୍ଚାରଣଗୁଡ଼ିକୁ ମୁଁ ଟିପି ରଖିଥାଏ । କଥାଛଳରେ ସେ କଥା ପଡ଼ି ଏକ ଜମାଣିଆ ହସ ହୁଏ ଓ ତା ପରଦିନ ସେହି ପିଲାକୁ ସେହି ଭୁଲ ଉଚ୍ଚାରଣ ନାମରେ ଡକାଯାଏ । ସେଇ କଉତୁକିଆ ନାମରେ ଡାକିଲେ କେହି ଅବଶ୍ୟ ନାକେଁରା ହୁଅନ୍ତି ନାହିଁ ବରଂ ଆହୁରି ଦୋସ୍ତି ଜମେ ।

ଆଉ ଗୋଟିଏ । ଆମେ ଏକ ନୂଆ ଶବ୍ଦ ମନରୁ ଫାନ୍ଦି ତାକୁ ଆମ ମେଳରେ କିଛି ଦିନ ବ୍ୟବହାର କରିଥିଲୁ । ଘଟଣାଟି ମହା ଆନନ୍ଦଦାୟକ । ଏକଦା ରେଡିଓରେ

ଇଂରାଜି ସମାଚାରର ମାତ୍ର ଗୋଟିଏ ଶବ୍ଦ ଅବୁଝା ହେବାରୁ ଭାରତ-ପାକିସ୍ତାନ (?) କ୍ରିକେଟ ମ୍ୟାଚର ଫଳାଫଳ ଜାଣିବାରେ ଆମକୁ ବହୁ ଚିନ୍ତାରେ ପକାଇଲା । ଆମ ଘରେ ଥିବା ଅଜନ୍ତା ଇଂରାଜି ଅଭିଧାନରୁ ସେହି ଉଚ୍ଚାରିତ ଶବ୍ଦଟି ମିଳିଲା ନାହିଁ । ସେ ଶବ୍ଦଟି ଏବେ ଆଉ ମୋର ମନେ ପଡୁନାହିଁ । ପ୍ରକୃତରେ ସେତେବେଳେ ଇଂରାଜି ସମାଚାରର ଫସ୍‌ଫାସ୍ ଉଚ୍ଚାରଣକୁ ଠଉରେଇବା ଆମ ପାଇଁ କାଠିକରପାଠ ଥିଲା । ହଠାତ୍ ସୁନନ୍ଦ ଭାଇ 'ସିକୋର୍‌ଲାଇସ୍' ନାମକ ଏକ ଶବ୍ଦ ଉଚ୍ଚାରଣ କରି ସମସ୍ତଙ୍କୁ ଅଭିଧାନ ଖେଳେଇବାକୁ ଆହ୍ୱାନ ଦେଲେ । ସଙ୍ଗେ ସଙ୍ଗେ C ଓ S ମୂଳରେ ଥାଇ ବନାନକୁ ଅନୁମାନ କରାଯାଇ ଅଭିଧାନ ଖେଳା ଚାଲିଲା । ନିରାଶ ହେଲୁ ସମସ୍ତେ । ମୁଁ ବହକାଲିଆ ହୋଇ କହିଲି ଶବ୍ଦଟି ଏ ଅଭିଧାନ ଛଡ଼ା ଅନ୍ୟ ବଡ଼ ଅଭିଧାନରେ ଥାଇପାରେ ବା ଅନ୍ୟ ବିଷୟଗତ ବହିଗୁଡ଼ିକରେ ଖୋଜାଯାଇପାରେ । ମୋ କଥା ଅନ୍ୟମାନଙ୍କ ମନକୁ ପାଇଲା । ତେଣୁ ମୋତେ ଦାୟିତ୍ୱ ଦିଆଗଲା ଯେ, କଲେଜର ଇଂରାଜି ସାର୍‌ଙ୍କୁ ଏହି ଶବ୍ଦର ଅର୍ଥ ପଚାରିବାପାଇଁ ।

ମୁଁ ତା ପରଦିନ ଯାଇ ଇଂରାଜି ସାର୍‌ଙ୍କୁ ସିକୋର୍‌ଲାଇସ୍ ଶବ୍ଦର ଅର୍ଥ ପଚାରିଲି । ସାର୍ କିଛି କ୍ଷଣ ଭାବି ଏମିତି ଶବ୍ଦ ଇଂରାଜିରେ ନାହିଁ କହି ବଡ଼ ହାଇଟାଏ ମାରି କମନ୍‌ରୁମ୍ ଆଡ଼କୁ ଗୋଡ଼ ବଢ଼େଇଲେ । ତହିଁ ଆରଦିନ ସୁନନ୍ଦ ଭାଇ ବୋରିକିନା ହାଟରେ ଦେଖା ହେଲେ । ଆମେ ଦୁହେଁ ଶିକାଶିଖି ହୋଇ ଦୋକାନୀଙ୍କୁ ଏହି ନାମରେ ପଚାରିବାକୁ ସ୍ଥିର କଲୁ । ସୁନନ୍ଦ ଭାଇ ମୋ ଠାରୁ ବୟସରେ ବଡ଼ ହୋଇଥିବାରୁ ହସ ଚାପି ପଚାରିବା ପାଇଁ ଦାୟିତ୍ୱ ନିଜେ ମୁଣ୍ଡେଇଲେ । ମୁଣ୍ଡ ଝାଳକୁ ଛାଟି ଭାରି କାଇଦାରେ ପଚାରିଲେ, "ଭାଇ ସିକୋର୍‌ଲାଇସ୍ ବିସ୍କୁଟ୍ ଅଛି କି ?" ଦୋକାନୀ ଟିକେ ହାପିସାପି ହୋଇ କାଳେ ନୂଆ ବିସ୍କୁଟ୍ ହୋଇଥିବ ଅନ୍ଦାଜ କରି, ଦୋକାନର ଇଜ୍ଜତ ଜଗି, ବଡ଼ ଚତୁରେ ଉତ୍ତର ଦେଲେ, ''ଥିଲା ଯେ... ସରିଯାଇଛି ।" ପାନ ମସଲା ଡବାକୁ ଛାଟି ସେ ଯେମିତି ବିଜ୍ଞାପଣରେ କହିଲେ, ତା ପରର ଶବ୍ଦାନନ୍ଦକୁ ଆପଣ ଅନୁମାନ କରିପାରୁଥିବେ । ଦିନାକେତେ ଆମେ କଥା କଥାକେ ଖାଲି ସିକୋର୍‌ଲାଇସ୍ ସିକୋର୍‌ଲାଇସ୍ ହେଲୁ ।

ପ୍ରଫୁଲ୍ଲ ସାର୍‌ଙ୍କ ଅନୁସ୍ୱାରଦିଆ ଲେଖା ମୋତେ ଛାତ୍ରାବସ୍ଥାରେ ବହୁଭାବରେ ପ୍ରଭାବିତ କରିଥିଲା । ସେହି ସମୟରେ 'ସମ୍ବାଦ' ଓ ସେହି ସଂସ୍ଥାର ସବୁ ପତ୍ରିକାରେ ଯୁକ୍ତବର୍ଣ୍ଣ ବଦଳରେ ଅନୁସ୍ୱାର ଓ ରେଫଯୁକ୍ତ ବର୍ଣ୍ଣରେ ଦ୍ୱିତ୍ୱ ହଟେଇ ଲେଖାମାନ

ପ୍ରକାଶପାଇଲା । ମୁଁ ମଧ୍ୟ ସେପରି ଲେଖିବାକୁ ଅଭ୍ୟାସ ବଢ଼ାଇଲି । ଏପରିକି ଘରେ 'ସମ୍ବାଦ' ରଖିବାପାଇଁ କାଠପେଟି ମଝିରେ ଯେଉଁ ଖୋପ ତିଆରି ହୋଇଥିଲା, ସେଥିରେ ମୁଁ ରଙ୍ଗ-ତୂଳୀରେ 'ସଂବାଦ' ଲେଖିଥିଲି । ଦୂରଦର୍ଶନ ଡିଡି-୧ ସଂଧ୍ୟା ସାତଟାର ଓଡ଼ିଆ ସମାଚାର ମୁଖ୍ୟାଂଶରେ ମଧ୍ୟ ଅନୁସ୍ୱାର ଓ ଦ୍ୱିତ୍ୱ ବର୍ଜନଯୁକ୍ତ ବନାନ ଲେଖି କିଛି ଦିନ ପ୍ରସାରଣ କରାଯିବା କଥା ମୋର ମନେଅଛି । କେହି ଜଣେ ଖବରକାଗଜରେ ଲେଖିବାରୁ ଟିଭିବାଲା ଆଉ ସେପରି ଲେଖିଲେ ନାହିଁ । ସେହି ସମୟରେ ମୁଖ୍ୟତଃ ସମ୍ବାଦ, ସମୟ, ସମାଜ, ପ୍ରଜାତନ୍ତ୍ର ଓ ପ୍ରଗତିବାଦୀ ଖବରକାଗଜରେ ଲିପି ସଂସ୍କାର ସଂପର୍କିତ ସପକ୍ଷ ଓ ବିପକ୍ଷ ଆଲୋଚନା ଯୁକ୍ତି ସହିତ ପ୍ରକାଶ ପାଉଥାଏ । ଏ ସଂପର୍କିତ ଅଧିକ ବିତର୍କ ହେଉଥିଲା 'ସମ୍ବାଦ' ଓ 'ସମୟ' ମଧ୍ୟରେ । ସମ୍ଭବତଃ ରାଜନୀତି ବା ବ୍ୟାବସାୟିକ ଶତ୍ରୁତା କାରଣରୁ ଏହି ଦୁଇ ଖବରକାଗଜରେ ସପକ୍ଷ ଓ ବିପକ୍ଷ ଲେଖାମାନ ଟାଣ ଯୁକ୍ତି ସହ ପ୍ରକାଶ ପାଉଥାଏ । ଏହି ସମୟରେ ମୁଁ +୨ ପଢୁଥିବା ବେଳେ 'ଭାଷା ସଂସ୍କାର ଉଦ୍ୟମ ଯଥାର୍ଥ' ନାମରେ ମୋର ଏକ ଦୀର୍ଘ ଅଭିମତ 'ସମ୍ବାଦ'ରେ ପ୍ରକାଶ ପାଇଥିଲା । ସେଇ ଆଖପାଖ ଚାରି ପାଞ୍ଚ ବର୍ଷର ଅଗ୍ରଣୀ ଓଡ଼ିଆ ଖବରକାଗଜଗୁଡ଼ିକରେ ଓଡ଼ିଆ ଭାଷା ତଥା ଲିପି ସଂସ୍କାର ସଂପର୍କିତ ପ୍ରକାଶିତ ପ୍ରାୟ ସମସ୍ତ ଲେଖାର କଟିଂ ଏବେ ବି ମୋ ପାଖରେ ଅଛି ।

'ସମ୍ବାଦ'ରେ ନିୟମିତ ଅନୁସ୍ୱାରଦିଆ ବନାନ ବୃଦ୍ଧି ପାଇବା ଫଳରେ ବୋଧହୁଏ ପ୍ରସାରଣରେ ବାଧକ ହେବାରୁ କର୍ତ୍ତୃପକ୍ଷ ଅନୁସ୍ୱାର ଓ ରେଫଯୁକ୍ତ ଦ୍ୱିତ୍ୱ ବର୍ଜନ ବନାନ ଆଉ ସେତେ ଅଧିକଭାବେ ବ୍ୟବହାର କଲେ ନାହିଁ । କିନ୍ତୁ ପ୍ରଫୁଲ୍ଲ ସାର୍ ଲିପି ସଂସ୍କାର ବନାନ ଧାରାରେ କୌଣସି ପରିବର୍ତ୍ତନ କରି ନ ଥିଲେ ବୋଲି ମୁଁ ତାଙ୍କର ଅନ୍ୟ ଲେଖାଗୁଡ଼ିକରୁ ଜାଣିବାକୁ ପାଇଲି । ତେବେ ମୁଁ ସେହି ସଂସ୍କାର ଧାରାରେ ଲେଖିଲେ ପରୀକ୍ଷା ଖାତାରେ ଅଧିକ ନାଲି ଗାର ବା ଛକି ଚିହ୍ନ ପଡ଼ିବାର ଆଶଙ୍କାରେ ଗୁରୁଜନମାନଙ୍କ କଥା ମାନି ଆଉ ସେପରି ପ୍ରାୟ ଲେଖିଲି ନାହିଁ । କାରଣ, ସେତେବେଳେ ଅନୁସ୍ୱାରଦିଆ ଲେଖା ବା ଲିପି ସଂସ୍କାର ପ୍ରସଙ୍ଗରେ ବହୁ ଶିକ୍ଷକ, ଅଧ୍ୟାପକଙ୍କ ସାମାନ୍ୟତମ ଧାରଣା ନ ଥିବାର ଆଲୋଚନା ହେଲା । ସେହି ସମୟ ମଧ୍ୟରେ ବା ଟିକେ ପରେ ମୁଁ ଏ ସଂପର୍କିତ ବିଭିନ୍ନ ପ୍ରସଙ୍ଗରେ ଭାଷାବିଜ୍ଞାନୀ ପ୍ରଫେସର୍ ଗଗନେନ୍ଦ୍ର ନାଥ ଦାଶ, ଡକ୍ଟର୍ ଧନେଶ୍ୱର ମହାପାତ୍ର ଓ ଆଉ କେତେଜଣଙ୍କ ସହ ପତ୍ରାଳାପ କରିଥିଲି । ପ୍ରାୟ ସମସ୍ତେ ମୋତେ ସେମାନଙ୍କର ମତ ଚିଠିରେ ଜଣାଇଥିଲେ ।

ଚିଠିରେ ପ୍ରଫୁଲ୍ଲ ସାର୍‌ଙ୍କ ଫୋନ୍ ନମ୍ବର ଆଣି ଦିନେ କଟକର ଏକ ବୁଥ୍‌ରୁ ଟଙ୍କାଟାଏ ଗଲେଇ ଫୋନ୍ କରିବାରୁ ସେପଟୁ ତାଙ୍କ ପତ୍ନୀଙ୍କର ଶୂନ୍ୟବାଣୀ ହେଲା ଯେ, ସେ ସାହିତ୍ୟ କାମରେ ବାହାରକୁ ଯାଇଛନ୍ତି । ପରେ ତାଙ୍କର ଫୋନ୍ ନମ୍ବର୍ ଲେଖିଥିବା କାଗଜଟି କେଉଁଠି ହଜିଯିବାରୁ ଆଉ ଯୋଗାଯୋଗ ସମ୍ଭବ ହୋଇ ନଥିଲା । ତାଙ୍କର ଫୋନ୍ ନମ୍ବର୍ ଲେଖାଥିବା ଚିଠିଟି ଗାଁରେ ରହିଯାଇଥିବାରୁ ପରେ ଦେଖିବାକୁ ମଧ୍ୟ ଭୁଲିଯାଇଥିଲି ।

ମଝିରେ ମଝିରେ ତାଙ୍କ ସହ ମୋର ଚିଠିପତ୍ର ଦିଆନିଆ ହେଉଥାଏ । ଥରେ ସେ କଟକର 'ବିଦ୍ୟାପୁରୀ' ପ୍ରକାଶନ ସଂସ୍ଥାକୁ ଆସିଥିଲେ । ମୁଁ ସେତେବେଳେ ରେଭେନ୍‌ସାରେ ଏମ୍.ଏ. ସାରି କଟକରେ ରହୁଥାଏ । ଦିନେ ସଂଧ୍ୟାରେ ବାଲୁବଜାରକୁ ବହି କିଣିବାକୁ ଯାଇଥିବାବେଳେ ଜଣେ 'ବିଦ୍ୟାପୁରୀ' ମାଲିକ ପିତାମ୍ବରବାବୁଙ୍କ ଦୋକାନରେ ବସି ତାଙ୍କ ସହିତ କଥା ହେଉଥିବାର ଦେଖିଲି । ସେ ଜଣକ ଯେ, ତ୍ରିପାଠୀ ସାର୍ ତାହା ଜାଣିବା ଆଗରୁ ସେଠାରୁ ସେ ଚାଲିଆସିଥିଲେ ।

ଥରେ ମହୀଶୂରରେ ବନ୍ଧୁ ଆଦିତ୍ୟ କୁମାର ପଣ୍ଡାଙ୍କ ଆକସ୍ମିକ ସୂଚନା ପରେ ତାଙ୍କଠୁଁ ଫୋନ୍ ନମ୍ବର ଆଣି ତ୍ରିପାଠୀ ସାର୍‌ଙ୍କ ସହ ଯୋଗାଯୋଗ କରିବା ପରେ ଦିନେ ଭୁବନେଶ୍ୱରର 'ସୂର୍ଯ୍ୟ ଏପାର୍ଟ୍‌ମେଣ୍ଟ' ବସାରେ ତାଙ୍କୁ ଦେଖାକଲି । ସେଦିନ ଥିଲା ୨୦୧୧ ମସିହା ମେ ମାସ ୧୨ ତାରିଖ । ମୁଁ ମହୀଶୂରର ଭାଷା ସଂସ୍ଥାନରେ କାମ କରୁଥିବା ଜାଣି ସେ ଖୁସି ହେଲେ ।

ଏବେ ଆଉ ତାଙ୍କୁ ଚିଠି ଲେଖିବାକୁ ପଡୁନାହିଁ । ବଦଳରେ ଫୋନ୍‌ର ସଦ୍‌ବ୍ୟବହାର କରିବାକୁ ପଡୁଛି । ୨୦୦୫ ମସିହା ଜୁଲାଇ ମାସ ୧୦ ତାରିଖର ଚିଠି ହେଉଛି ତାଙ୍କଠାରୁ ପ୍ରାପ୍ତ ଶେଷ ଚିଠି । ତାଙ୍କର 'ଶବ୍ଦଗଠନ କୋଷ' ଓ 'ବ୍ୟାକରଣ କୋଷ' ବହି ଦୁଇଟିର ପ୍ରଥମ ପାଠକ ହେଉଛି ମୁଁ । ଯେଉଁ ଭିନ୍ନ ଭିନ୍ନ ଦିନରେ ବହି ଦୁଇଟି ପ୍ରକାଶ ପାଇଥିଲା; ତାହାର ପ୍ରଥମ କପି ଥିଲା ମୋ ହାତରେ । ତାହା ମୋର ଏକ ସୌଭାଗ୍ୟ । ଯେଉଁ ଦିନ ତାଙ୍କର ମୋର ପ୍ରଥମ ମୁଲାକାତ୍ ହେଲା, ଯୋଗକୁ ସେହିଦିନ ତାଙ୍କ 'ଶବ୍ଦଗଠନ କୋଷ'ର ଜନ୍ମଦିନ । 'ବ୍ୟାକରଣ କୋଷ' ବହିଟିକୁ ତ୍ରିପାଠୀ ସାର୍ ନିଜେ ଦେଖିବା ଆଗରୁ ତାଙ୍କ କହିବା ମୁତାବକ ଓଡ଼ିଶା ଆସିଥିବା ବେଳେ ୨୦୧୩ ମସିହା ମେ ମାସ ୨୯ ତାରିଖ ଦିନ ପ୍ରକାଶକ ଗିରିଜାବାବୁଙ୍କ ପ୍ରେସ୍‌ରୁ ମୁଁ ତାହାକୁ ସଂଗ୍ରହ କରିଥିଲି ।

ମହୀଶୂରସ୍ଥ କେନ୍ଦ୍ରୀୟ ଭାରତୀୟ ଭାଷା ସଂସ୍ଥାନର ଏଲ.ଡି.ସି. - ଆଇ.ଏଲ୍ (LDC-IL) ବିଭାଗ ତରଫରୁ ୨୦୧୧ ସେପ୍ଟେମ୍ବର ମାସରେ ଓଡ଼ିଆ ପଦପ୍ରକରଣ (Odia Parts of Speech Annotation) ସଂପର୍କିତ ଏକ କର୍ମଶାଳାରେ ବକ୍ତବ୍ୟ ଦେବାପାଇଁ ଆମେ ତାଙ୍କୁ ଅତିଥିଭାବେ ଡାକିଥିଲୁ । ଅସୁସ୍ଥତା ସତ୍ତ୍ୱେ ସେ ଭାୟା ମୁମ୍ବାଇ ଦେଇ ଉଡ଼ାଜାହାଜରେ ଉଡ଼ିଉଡ଼ି ଆସି ଆମ ପାଖରେ ପହଞ୍ଚିଲେ । ବିନା ଭାଷାବିଜ୍ଞାନ ତାଲିମ୍‌ରେ ସେ ତାଙ୍କର ଭାଷା ବୈଜ୍ଞାନିକ ବକ୍ତବ୍ୟ ଯେପରି ପରଦିନ ଉପସ୍ଥାପନ କଲେ ; ତାହା ଆମ ବୟସର ଅନ୍ୟ ଭାଷାଭାଷୀ ପିଲାମାନଙ୍କୁ ବହୁଭାବରେ ମୁଗ୍ଧ କରିଥିଲା । ଭାଷାବିଜ୍ଞାନର ଶୁଷ୍କତାକୁ ପରିହାର କରି ସରଳ ଓ କଥିତ ଭାଷାରୁ ଉଦାହରଣ ସବୁ ଦେଇ ତାଙ୍କର ବକ୍ତବ୍ୟକୁ ଯେପରି ଯୁକ୍ତିପୂର୍ଣ୍ଣ କରିଥିଲେ ବାସ୍ତବିକ୍ ତାହାର ପଟାନ୍ତର ନାହିଁ । ବଡ଼ ଆନନ୍ଦରେ ବା ମଜାରେ ଯେ ଭାଷାକୁ ଚର୍ଚ୍ଚା କରାଯାଇପାରେ ତାହା ପ୍ରାୟ ସମସ୍ତେ ସେଦିନ ହୃଦ୍‌ବୋଧ କରିଥିଲେ । ଆମ ବିଭାଗର ଜିତେନ୍ଦ୍ର କୁମାର ସିଂହ, ଅମୋମ ନନ୍ଦରାଜ ମୀତେ ଓ ଅରୁଣ କୁମାର ସିଂହଙ୍କୁ ତାଙ୍କ ବକ୍ତବ୍ୟ ବହୁତ ଭଲ ଲାଗିଥିଲା ବୋଲି ସେମାନେ ଅନ୍ୟମାନଙ୍କୁ ଓ ମୋତେ କହିଥିବାର ମୋର ମନେଅଛି । ଏପରିକି ଅମୋମ ନନ୍ଦରାଜ ତାଙ୍କ ବକ୍ତବ୍ୟରେ ମୁଗ୍ଧ ହୋଇ ମନେମନେ "ଓରିଆ ଇଜ୍ ଏ ନାଇସ୍ ଲାଙ୍ଗୁଏଜ୍" କହୁଥିବାର ମୁଁ ଲକ୍ଷ୍ୟ କରିଥିଲି । ପୂର୍ବ ଦିନ ରାତି ପ୍ରାୟ ଏଗାରଟାରେ ମହୀଶୂରରେ ପହଞ୍ଚିବା ପରେ ଆମ ଅନୁଷ୍ଠାନର ଗେଷ୍ଟ ହାଉସ୍‌ରେ ରାତି ପ୍ରାୟ ଦୁଇଟା ଯାଏ ତାଙ୍କର ମନ ମତାଣିଆ କଥା ବେଶ୍ ସ୍ମରଣୀୟ । ସେଥିରେ ଯାତ୍ରାର ପ୍ରଚାର ଶୈଳୀ, ସମ୍ବଲପୁରି ଓ ଆଦିବାସୀ ଭାଷାରେ ଚାଉଁଚାଉଁ ମଉଜିଆ କଥା ବେଶ୍ ମନମୁଗ୍ଧକର ଥିଲା ।

ଭାଷା ପ୍ରତି ପ୍ରଥମେ ଡକ୍ଟର୍ ତ୍ରିପାଠୀଙ୍କର ଚିଠିରେ ଉତ୍ସାହ ଓ ପରେ ପରେ ଶିକ୍ଷାଗୁରୁ ଡକ୍ଟର୍ ନଟବର ଶତପଥୀ ଓ ପ୍ରଫେସର୍ ଗଗନେନ୍ଦ୍ର ନାଥ ଦାଶଙ୍କ ପ୍ରତ୍ୟକ୍ଷ ପ୍ରେରଣା ମୋ ପାଇଁ ସବୁବେଳେ ସ୍ମରଣୀୟ । ଏହି ତିନି ପ୍ରତିଭାଧରଙ୍କ ନିଷ୍ଠା, ଅଧ୍ୟୟନ ଓ ବ୍ୟକ୍ତିତ୍ୱ ଆଦି ସଂପର୍କରେ ଆସି ମୁଁ ବେଶ୍ ଉତ୍ସାହିତ ହୋଇଛି । ପ୍ରଫେସର୍ ଦାଶଙ୍କ ପ୍ରେରଣାରେ ମୁଁ ମହୀଶୂର ଆସିବା ପରେ ପ୍ରଫେସର୍ ବିବୁଧେନ୍ଦ୍ର ନାରାୟଣ ପଟ୍ଟନାୟକଙ୍କ ପରିଚୟରେ ଆସି ତାଙ୍କ ଶୁଭେଚ୍ଛା ଲାଭ କରିଛି ।

**ସନ୍ତୋଷ କୁମାର ମହାନ୍ତି**

''ଆଉ ଯେତେ ଭାଷା ପାରୁଛ, ଶିଖ
ଆଗ ନିଜ ଭାଷା ମହତ ରଖ।''

# ଏଇଠୁ ଆରମ୍ଭ ଚିଠି...

**ପ୍ରଶ୍ନ : ୧**. ଆମ ଘରେ ଏବେ 'ସମ୍ବାଦ' ଖବରକାଗଜ ବଦଳରେ 'ଦି ନିଉ ଇଣ୍ଡିଆନ୍ ଏକ୍ସପ୍ରେସ୍' ଆସୁଛି । ଫଳରେ ନିୟମିତ ଆପଣଙ୍କ 'ଭାଷା ଭାବନା' ପଢ଼ିବା ଓ ସଂଗ୍ରହ କରିବା ସମ୍ଭବ ହେଉନାହିଁ । ଆପଣ 'ସମ୍ବାଦ'ରୁ ଆପଣଙ୍କ ଲେଖା କାଟିକି ପଠେଇଲେ ମୁଁ ଖୁସି ହୁଅନ୍ତି । ଏ ବିଷୟରେ ଜଣେଇବେ ।

**ଉତ୍ତର :**

ଫ.ମୋ. ମହାବିଦ୍ୟାଳୟ, ବାଲେଶ୍ୱର

ଶ୍ରଦ୍ଧେୟ ସଂତୋଷ,

ତୁମର ପତ୍ରରୁ ତୁମର ଓଡ଼ିଆ ଭାଷା ଓ ସାହିତ୍ୟ ପ୍ରୀତି ବିଷୟ ଜାଣି ଆନନ୍ଦିତ ହେଲି । ଏହି ଭାବକୁ ନିଜ ଭିତରେ ବଂଚାଇ ରଖିବାକୁ ଚେଷ୍ଟା କଲେ ଜୀବନ ସାର୍ଥକ ହେବ ।

ଜୁଲାଇ ୧୫ ତାରିଖ ପରେ ମୁଦ୍ରିତ 'ଭାଷାଭାବନା'ଗୁଡ଼ିକ ତୁମେ ବରଂ ଆଖପାଖର ଅନ୍ୟ କୌଣସି 'ସଂବାଦ'-ଗ୍ରାହକଙ୍କଠାରୁ ସଂଗ୍ରହ କରିବାକୁ ଉଦ୍ୟମୀ ହୁଅ । କାରଣ ପ୍ରତିଦିନ ତୁମ ପାଖକୁ ଖବରକାଗଜରୁ ଲେଖା କାଟି ପଠାଇବା ମୋ ପକ୍ଷରେ ସଂଭବ ହେବ ନାହିଁ । ଏଥି ପାଇଁ ଦୁଃଖିତ ।

ଶୁଭେଚ୍ଛା ସହ

ପ୍ରଫୁଲ୍ଲ କୁମାର ତ୍ରିପାଠୀ

୧୩.୮.୯୭

**ପ୍ରଶ୍ନ : ୨**. ଚ, ଢ, ଡ ତଳେ ବିନ୍ଦୁ ଦେବାର ନିୟମଟି କ'ଣ ?

**ଉତ୍ତର :**

ଶ୍ରଦ୍ଧେୟ ସଂତୋଷ ବାବୁ,

ବଡ଼, ଡଂଗା, ଖଡ଼ା, ଡାକ, ଡାଳ, ବିଡ଼ା ... ଇତ୍ୟାଦିରେ ଲକ୍ଷ୍ୟ କରିବା 'ଡ' ଓ 'ଡ଼'ର ଉଚ୍ଚାରଣ ଭିନ୍ନ ହେଉଛି । ତେଣୁ 'ଡ' ତଳେ ବିଂନ୍ଦୁ ରହେ । ସେହିପରି

'ଢ' ଓ 'ଢ଼' ର ଉଚ୍ଚାରଣ ଢଙ୍ଗ, କଢ଼, ଢିମା, ବଢ଼ି ... ଇତ୍ୟାଦିରେ କିପରି ହେଉଛି ନିଜ କାନରେ ନିଜେ ଶୁଣନ୍ତୁ । କିନ୍ତୁ 'ଚ' ଓ 'ଚ଼'ର ଦୁଇ ପ୍ରକାର ଉଚ୍ଚାରଣ ହେଉ ନ ଥିବା ଯୋଗୁଁ 'ଚ' ତଳେ ବିନ୍ଦୁ ଦେବା ଅନାବଶ୍ୟକ ବାହୁଲ୍ୟ ମାତ୍ର । କେବଳ 'ଚ' ଲେଖିଲେ କୌଣସି ଦୋଷ ନାହିଁ । ଅନ୍ୟାନ୍ୟ ସଂସ୍କୃତଜ ଭାଷାରେ 'ଚ' ତଳେ ବିନ୍ଦୁ ଦେବାର ଚଳଣି ନାହିଁ । ଓଡ଼ିଆରେ ଏହା କିଏ କେବେ କାହିଁକି ଆରମ୍ଭ କଲେ ଆମକୁ ଜଣା ନାହିଁ ।

ଶୁଭେଚ୍ଛା ସହ
ପ୍ରଫୁଲ୍ଲ କୁମାର ତ୍ରିପାଠୀ
୩୧.୩.୯୮
ବ.ଜ.ବି ମହାବିଦ୍ୟାଳୟ, ଭୁବନେଶ୍ୱର

**ପ୍ରଶ୍ନ :୩.** ଓଡ଼ିଆ ଭାଷାର ବର୍ଣ୍ଣ ସଂଖ୍ୟା କେତେ ? ଆପଣ ଲେଖିଥିବା 'ସମ୍ବାଦ ରଚନା ବିଧି' ବହିଟି କେଉଁଠୁ ମିଳିପାରିବ ?

**ଉତ୍ତର :**

ଶ୍ରଦ୍ଧେୟ ସନ୍ତୋଷ

୧୩.୪.୯୮ ଦିନାଙ୍କିତ ଚିଠି ପାଇଛି । ଓଡ଼ିଆରେ ପ୍ରଚଳିତ ବର୍ଣ୍ଣଗୁଡ଼ିକର ସଂଖ୍ୟାକୁ ନେଇ ନାନା ମୁନିଙ୍କର ନାନା ମତ । ଏ ବିଷୟରେ ବିସ୍ତାରିତ ଆଲୋଚନା ପୂର୍ବରୁ ଇତିବାଚକ ନିର୍ଣ୍ଣୟ କରିବା ଆଦୌ ସମୀଚୀନ ହେବ ନାହିଁ ।

ମୁଁ ଏବେ ଅନ୍ୟାନ୍ୟ କାର୍ଯ୍ୟରେ ମନୋନିବେଶ କରିଥିବା ଯୋଗୁଁ ଭାଷା-ଚର୍ଚ୍ଚା କରିବସିଲେ ଧ୍ୟାନ-ଭଙ୍ଗ ହୋଇପାରେ । ଏଣୁ ଏବେ ଏ ବିଷୟରେ ପତ୍ର ବିନିମୟ କରିବା ପାଇଁ ଅନିଚ୍ଛୁକ । ଆଶା କରେଁ, ଏହାର ଅର୍ଥାନ୍ତର ଘଟିବ ନାହିଁ ।

'ରଚନା ବିଧି'ର ବିଜ୍ଞାପନରେ ପ୍ରାପ୍ତିସ୍ଥାନର ନାମୋଲ୍ଲେଖ ହୋଇଛି । ଡାକ ଯୋଗେ ବହିଟି ମଗାଇଲେ କୌଣସି ଅସୁବିଧା ହେବାର କଥା ନୁହେଁ ।

ଆନ୍ତରିକ ସଦିଚ୍ଛା ସହ
ପ୍ରଫୁଲ୍ଲ କୁମାର ତ୍ରିପାଠୀ
୧୮/୪/୯୮

ଅ ଆ ଇ ଈ ଉ ଊ ଋ ଏ ଐ ଓ ଔ

କ ଖ ଗ ଘ (ଙ)

ଚ ଛ ଜ ଝ (ଞ)

ଟ ଠ ଡ ଢ ଣ

ଡ଼ ଢ଼

ତ ଥ ଦ ଧ ନ

ପ ଫ ବ ଭ ମ

ୟ ଯ ର ଳ ଲ (ୱ)

ଶ ଷ ସ ହ (କ୍ଷ)

ଅଯୋଗବାହ ବର୍ଣ୍ଣ ବା ଅନକ୍ଷର ଚିହ୍ନ : ଂ ଃ ଁ ୍

ଙ, ଞ ର ଏକକ ପ୍ରଚଳନ ନାହିଁ । ୱ, କ୍ଷ କୁ ଯୁକ୍ତାକ୍ଷରରୂପେ ଗ୍ରହଣ କରାଯାଇପାରେ ।

**ପ୍ରଶ୍ନ:୪**: ଜ୍ଞ ଅକ୍ଷରକୁ ଭାଙ୍ଗି ଆଉ କେମିତି ଲେଖି ହେବ କି ? ଅନୁସ୍ୱାର ବ୍ୟବହାରର ନିୟମଟି କ'ଣ ? ଆପଣଙ୍କ ସ୍ଥାୟୀ ଠିକଣା ଲେଖିବେ ।

**ଉତ୍ତର :**

ବ.ଜ.ବି. ମହାବିଦ୍ୟାଳୟ, ଭୁବନେଶ୍ୱର

(ମୋର କୌଣସି ସ୍ଥାୟୀ ଠିକଣା ନାହିଁ)

ଶ୍ରଦ୍ଧେୟ ସଂତୋଷ,

ଜ୍ + ଞ = 'ଜ୍ଞ' ହୋଇଥିବା ଯୋଗୁଁ 'ଜ୍ଞ' ଅକ୍ଷରଟିକୁ ଅନ୍ୟରୂପେ ଲେଖି ହେବ ନାହିଁ ।

ଞ୍ + ଜ = ଞ୍ଜ । ଏହାର ବିକଳ୍ପ ରୂପ 'ଂଜ' ।

ଙ୍, ଞ୍, ଣ୍, ନ୍, ମ୍ ବଦଳରେ ଅନୁସ୍ୱାର ବ୍ୟବହାର କରାହୁଏ ।

ଙ୍ + କ, ଖ, ଗ, ଘ = ଙ୍କ, ଙ୍ଖ, ଙ୍ଗ, ଙ୍ଘ କିଂବା ଂକ, ଂଖ, ଂଗ, ଂଘ

ଞ୍ + ଚ, ଛ, ଜ, ଝ = ଞ୍ଚ, ଞ୍ଛ, ଞ୍ଜ, ଞ୍ଝ କିଂବା ଂଚ, ଂଛ, ଂଜ, ଂଝ

ଣ୍ + ଟ, ଠ, ଡ, ଢ = ଣ୍ଟ, ଣ୍ଠ, ଣ୍ଡ, ଣ୍ଢ  କିଂବା  ଂଟ, ଂଠ, ଂଡ, ଂଢ

ନ୍ + ତ, ଥ, ଦ, ଧ = ନ୍ତ, ନ୍ଥ, ନ୍ଦ, ନ୍ଧ  କିଂବା  ଂତ, ଂଥ, ଂଦ, ଂଧ

ମ୍ + ପ, ଫ, ବ, ଭ = ମ୍ପ, ମ୍ଫ, ମ୍ବ, ମ୍ଭ  କିଂବା  ଂପ, ଂଫ, ଂବ, ଂଭ

ଏହା ହିଁ ସୂତ୍ର । ଯେଉଁ ବନାନ ସ୍ୱଚ୍ଛ ଓ ସ୍ପଷ୍ଟ ତାହା ଗ୍ରହଣୀୟ । ଏହା ଛଡ଼ା ଅଂଶ, ହଂସ, ବଂଶ, ସୁତରାଂ, ସ୍ୱୟଂ, ସଂଯମ ... ଭଳି ଅଗଣିତ ଶବ୍ଦରେ ଅନୁସ୍ୱାର ଲାଗେ ।

ଆଉ ଯେତେ ଭାଷା ପାରୁଛ ଶିଖ

ଆଗ ନିଜ ଭାଷା ମହତ ରଖ

ଶୁଭେଚ୍ଛା ସହ

ପ୍ରଫୁଲ୍ଲ କୁମାର ତ୍ରିପାଠୀ

୨୫ ଜୁଲାଇ ୧୯୯୮

**ପ୍ରଶ୍ନ :୫**. ଆପଣ ଠିକଣାରେ ବ.ଜ.ବି. ମହାବିଦ୍ୟାଳୟ ଲେଖୁଛନ୍ତି । ଏହାର ପୂରା ନାଁ କ'ଣ ? ଫେବୃଆରି / ଫେବ୍ରୁଆରି / ଫେବୃୟାରୀ କେଉଁ ବନାନଟି ଶୁଦ୍ଧ ? ଜ: ଯ ଭେଦ ବୁଝିବା ପାଇଁ କିଛି ସୂତ୍ର ଅଛି କି ?

**ଉତ୍ତର :**

ଶ୍ରଦ୍ଧେୟ ସଂତୋଷ

ପତ୍ରୋତ୍ତର ଦେବାରେ ବିଳଂବ ଯୋଗୁଁ ମୁଁ ଦୁଃଖିତ । 'ବକ୍ସି ଜଗବଂଧୁ, ବିଦ୍ୟାଧର ମହାବିଦ୍ୟାଳୟ'ର ସଂକ୍ଷିପ୍ତ ନାମ 'ବ.ଜ.ବି. ମହାବିଦ୍ୟାଳୟ' । ଯେଉଁଠି ର+ଉ ଧ୍ୱନି ଦରକାର ସେଠି ୍ରୁ ଲାଗିବା ବିଧେୟ । ଏଠି ୍ର ର-ସୂଚକ ଓ ୁ ଉ-ସୂଚକ । ତେଣୁ 'ଫେବ୍ରୁଆରି' ଲେଖିବା ହିଁ ସଂଗତ ।

ଅଭିଧାନ ଦେଖି ଜ: ଯ ଭେଦ ବୁଝିବାକୁ ହେବ । ଏଥି ପାଇଁ କୌଣସି ନିର୍ଦ୍ଦିଷ୍ଟ ସୂତ୍ର ବା ନିୟମ ଥିବା କଥା ମୁଁ ଜାଣିନାହିଁ ।

ନିଜ ଭିତରେ ଭାଷାନୁରାଗକୁ ପାଳନ କରି ଚାଲିଲେ ଯଶସ୍ୱୀ ହେବ ।

ଆଂତରିକ ଶୁଭେଚ୍ଛା ସହ

ପ୍ରଫୁଲ୍ଲ କୁମାର ତ୍ରିପାଠୀ

୨୧.୮.୯୮

**ପ୍ରଶ୍ନ :୬.** ପତ୍ର-ପତ୍ରିକାରେ ଲେଖା ଆରମ୍ଭରୁ ପ୍ରଥମ ବର୍ଣ୍ଣକୁ ବେଳେ ବେଳେ ବଡ଼ କରି ଲେଖାଯାଏ । ତେବେ ପ୍ରଥମ ବର୍ଣ୍ଣ ପରେ ଯଦି ଦ୍ୱିତୀୟ ବର୍ଣ୍ଣଟି ଯୁକ୍ତବର୍ଣ୍ଣ ହୋଇଥାଏ, ତାହାକୁ ଅନୁସ୍ୱାର ଦେଇ ଲେଖିଲେ କେମିତି ଲେଖାଯିବ ? କାରଣ, ଆପଣ କହୁଛନ୍ତି ଅନୁସ୍ୱାର ବର୍ଣ୍ଣ ପୂର୍ବରୁ ଲାଗେ । ଯଥା :- ଅଂକ । ଙ୍କ = ଂକ । ଏ ବିଷୟ ସ୍ପଷ୍ଟ କରିବେ ।

**ଉତ୍ତର :**

ଭୁବନେଶ୍ୱରରୁ

ଶ୍ରଦ୍ଧେୟ ସଂତୋଷ,

'ଅଂଶ' ରେ 'ଂ' ଟି ଅନୁସ୍ୱାର ।

'ଅଂକ'ରେ 'ଂ' ଟି କ-ବର୍ଗର ପଂଚମାକ୍ଷର 'ଙ'ର ବିକଳ୍ପ ।

ଏଣୁ ଲେଖା ଆରଂଭରେ ବଡ଼ ଅକ୍ଷର ରଖିବାକୁ ହେଲେ ଯଥାକ୍ରମେ **ଅଂଶ**, **ଅଂକ** ଲେଖାଯାଇପାରେ । ତେବେ ଆମର ଲିଖନ / ମୁଦ୍ରଣ କ୍ଷେତ୍ରରେ ଏ ଧରଣର ସୂକ୍ଷ୍ମତା ପ୍ରତିଷ୍ଠିତ ହେବାକୁ ସମୟ ଲାଗିବ । ଆମକୁ ଧୈର୍ଯ୍ୟ ଓ ବିଶ୍ୱାସ ଧରି କାର୍ଯ୍ୟ କରିବାକୁ ହେବ ।

ଆଂତରିକ ଶୁଭେଚ୍ଛା ସହ
ପ୍ରଫୁଲ୍ଲ କୁମାର ତ୍ରିପାଠୀ
୧୦.୧୦.୧୯୯୮

**ପ୍ରଶ୍ନ.୭ :** 'ନ୍ତ' ବେଳେବେଳେ 'ନ୍ତ୍ର' ଭାବରେ ଲେଖାଯାଉଛି । କେମିତି ଲେଖିଲେ ଠିକ୍ ହେବ ? 'ପ୍ରାଧ୍ୟାପକ' ଶବ୍ଦର ଅର୍ଥ କ'ଣ ?

**ଉତ୍ତର :**

୨୧୩୨/୫୧୪୦, ଲୁଇସ୍ ରୋଡ୍
ଭୁବନେଶ୍ୱର ୭୫୧୦୧୪

ଶ୍ରଦ୍ଧେୟ ସଂତୋଷ,

ଓଡ଼ିଆରେ ଆମକୁ 'ମନ୍ତ୍ର, ଯନ୍ତ୍ର, ତନ୍ତ୍ର, ଅସ୍ତ୍ର, ବସ୍ତ୍ର, ଶସ୍ତ୍ର' ଭଳି ଶବ୍ଦରେ 'ନ' ଓ 'ସ' ତଳେ ଯେଉଁ 'ଏ' ଦେଖିବାକୁ ମିଳେ ତାହା 'ତ+ର' ର ସୂଚକ । ତେବେ 'ନ୍ତ୍ର' କୁ 'ନ୍ତ୍ର' ରୂପେ ଏବଂ 'ସ୍ତ୍ର' କୁ 'ସ୍ତ୍ର' ରୂପେ ଲେଖିବା ଫଳରେ ସ୍ପଷ୍ଟତା ବଢ଼ିବ ।

ଆମର ଚାକିରିରେ Lecturer (ଅଧ୍ୟାପକ), Reader (ପ୍ରାଧ୍ୟାପକ), Professor (ପ୍ରଫେସର) - ଏମିତି ତିନୋଟି ସ୍ତର ଅଛି । ଶିକ୍ଷାଦାନ ଅଭିଜ୍ଞତା ଓ ଯୋଗ୍ୟତା ଭିତ୍ତିରେ ତଳ ସ୍ତରରୁ ଉପର ସ୍ତରକୁ ଯାଇହୁଏ ।

ଆନ୍ତରିକ ଶୁଭେଚ୍ଛା ସହ
ପ୍ରଫୁଲ୍ଲ କୁମାର ତ୍ରିପାଠୀ
୨୫.୧୦.୧୯୯୮

**ପ୍ରଶ୍ନ.୮** : ଦ୍ୱିତ୍ୱବର୍ଣ୍ଣ କହିଲେ କ'ଣ ?

**ଉତ୍ତର** :

ଶ୍ରଦ୍ଧେୟ ସଂତୋଷ

ଗୋଟିଏ ବର୍ଣ୍ଣର ଲାଗଲାଗ ଦୁଇ ଥର ଉଚ୍ଚାରଣ ହେଲେ 'ଦ୍ୱିତ୍ୱ' ହୁଏ ।

କ୍ + କ = କ୍କ ଧକ୍କା, ପକ୍କା

ଚ୍ + ଚ = ଚ୍ଚ ଉଚ୍ଚ

ଜ୍ + ଜ = ଜ୍ଜ ସଜ୍ଜା, ସଜ୍ଜିତ

ଟ୍ + ଟ = ଟ୍ଟ ପଟ୍ଟ, ଅଟ୍ଟାଳିକା

ଣ୍ + ଣ = ଣ୍ଣ କ୍ଷୁଣ୍ଣ, ବିଷଣ୍ଣ

ତ୍ + ତ = ତ୍ତ ବିତ୍ତ, ଚିତ୍ତ, ଉତ୍ତର

ଦ୍ + ଦ = ଦ୍ଦ ଉଦ୍ଦେଶ୍ୟ

ନ୍ + ନ = ନ୍ନ ଅନ୍ନ, ଭିନ୍ନ

ମ୍ + ମ = ମ୍ମ ସମ୍ମାନ / ସଂମାନ

ଲ୍ + ଲ = ଲ୍ଲ ମଲ୍ଲ

'ଦ୍ୱିତ୍ୱ' ବର୍ଣ୍ଣରେ ରେଫ ଲାଗିଲେ ଅନୁଚ୍ଚାରଣୀୟ ହୋଇପଡ଼େ ।

ଖର୍ଚ୍ଚ = ଖରଚ୍ଚ, ଖର୍ଚ = ଖରଚ

କର୍ତ୍ତା = କରତ୍ତା, କର୍ତା = କରତା

କିନ୍ତୁ 'ଅର୍ଘ୍ୟ'ରେ ତ 'ଅରଘୟ' ଅଛି । ଏଠି ଦ୍ୱିତ୍ୱ କାହିଁ? ଘ୍ + ଘ ଯୋଗଥିଲେ ସିନା ଦ୍ୱିତ୍ୱ ହୋଇଥାନ୍ତା । ଆମ ଭାଷାରେ 'ଖ, ଗ, ଘ, ଙ, ଠ, ଥ, ଧ, ଫ, ଭ, ଶ, ଷ, ସ, ହ' ବର୍ଣ୍ଣର ଦ୍ୱିତ୍ୱ ହୁଏ ନାହିଁ ।

ବିଶ୍ୱାସ କରୁଛିଁ, ଏ ସଂପର୍କରେ ଧାରଣା ଏବେ ସ୍ପଷ୍ଟତର ହୋଇଥିବ ।

ଶୁଭେଚ୍ଛା ସହ

ପ୍ରଫୁଲ୍ଲ କୁମାର ତ୍ରିପାଠୀ

୭.୧୨.୧୯୯୮

ବ.ଜ.ବି. ମହାବିଦ୍ୟାଳୟ, ଭୁବନେଶ୍ୱର

**ପ୍ରଶ୍ନ.୯**: ଅଇଁଠା ଓ ଅଇଣ୍ଠା ମଧ୍ୟରୁ କେଉଁଟି ଠିକ୍? ଆପଣଙ୍କ 'ଓଡ଼ିଆ ବନାନ ଅଭିଧାନ' ଏବେ କ'ଣ ବଜାରରେ ମିଳୁଛି?

**ଉତ୍ତର :**

ଭୁବନେଶ୍ୱର

ଶ୍ରଦ୍ଧେୟ ସଂତୋଷ

ଦ୍ୱିସ୍ୱର ବର୍ଣ୍ଣ ପରେ ପରେ ଥିବା ସ୍ପର୍ଶ ବର୍ଣ୍ଣ କ୍ଷେତ୍ରରେ ଅନୁନାସିକ ଓ ନାସିକ୍ୟ ଉଚ୍ଚାରଣର ବୈଷମ୍ୟ ଲୁପ୍ତ ହୋଇଯାଏ ।

ଅଇଁଠା-ଅଇଣ୍ଠା (ଅଇଂଠା)

ସରଳତା ଏବଂ ସମରୂପତା ରକ୍ଷା କରିବା ନିମନ୍ତେ 'ପାଉଁଜି, କଇଁଛ, ଗଇଁତି, ପଇଁତରା, କାଇଁଚ, ସାଉଁଟା, ଅଇଁଠା' ଧରଣର ବନାନ ସମୀଚୀନ ମନେ ହୁଏ ।

'ଓଡ଼ିଆ ବନାନ ଅଭିଧାନ'ର ଏକ ସୀମିତ ସଂସ୍କରଣ 'ଗାୟତ୍ରୀ, କଳ୍ପନା ରୋଡ୍, ଭୁବନେଶ୍ୱର ୭୫୧୦୧୪' ପ୍ରକାଶ କରିଥିଲେ । ମୂଲ୍ୟ ଥିଲା ଟ ୧୨୫/- । ଏବେ ବହିଟି ବିକ୍ରୟ ପାଇଁ ମିଳୁଛି କି ନାହିଁ, ମୋତେ ଜଣାନାହିଁ ।

ଶୁଭେଚ୍ଛା ସହ

ପ୍ରଫୁଲ୍ଲ କୁମାର ତ୍ରିପାଠୀ

୨.୧.୧୯୯୯

**ପ୍ରଶ୍ନ.୧୦** : ପାରିବାରିକ ନାମ 'ସିଂହ'କୁ କେହି କେହି 'ସିଂ' ଲେଖୁଛନ୍ତି । 'ସିଂହଙ୍କର' ବଦଳରେ 'ସିଂଙ୍କର' ଲେଖିଲେ ଚଳିବ ? ଡକ୍ଟର୍ ଧନେଶ୍ୱର ମହାପାତ୍ର ଓ ଡକ୍ଟର୍ ଦେବୀ ପ୍ରସନ୍ନ ପଟ୍ଟନାୟକଙ୍କ ଠିକଣା ଜାଣିଥିଲେ ମୋତେ ଲେଖିବେ ।

**ଉତ୍ତର :**

ଶ୍ରଦ୍ଧେୟ ସଂତୋଷ

'ସିଂହ'ର ସଂକ୍ଷିପ୍ତ ରୂପ 'ସିଂ' କଥିତ ସ୍ତରରେ ରହିଲେ ହିଁ ଭଲ । 'ସିଂଙ୍କର' ଦେଖିବାକୁ ନିଶ୍ଚୟ ଏବେ ଅଡୁଆ ଦିଶୁଛି । ତେବେ ପାରଂପରିକ ବନାନରେ ସୁଦ୍ଧା 'ରଙ୍କ' ନାମଧାରୀ ବ୍ୟକ୍ତିଙ୍କ ବିଷୟରେ 'ରଙ୍କଙ୍କର' ଲେଖିଲେ ଅଡୁଆ ଦିଶୁଛି ନା ନାହିଁ ? ଡ. ଧନେଶ୍ୱର ମହାପାତ୍ର ଓ ଡ. ଦେବୀ ପ୍ରସନ୍ନ ପଟ୍ଟନାୟକଙ୍କ ଠିକଣା ଏବେ ମୋ ପାଖରେ ନାହିଁ ।

ଶୁଭେଚ୍ଛା ସହ
ପ୍ରଫୁଲ୍ଲ କୁମାର ତ୍ରିପାଠୀ
୩୦.୧.୧୯୯୯

**ପ୍ରଶ୍ନ.୧୧** : ଚିଠିରେ ଆପଣ ମୋ ନାଁ ଲେଖି ସାରିବା ପରେ ଏବେ ଆଉ କମା ଦେଉନାହାନ୍ତି ? ଏହାର କାରଣ କ'ଣ ? ଉଚ୍ଚାରଣ ବା ଶବ୍ଦ ଗଠନ ଅନୁସାରେ ଦେଖିଲେ କିଛି କିଛି ଶବ୍ଦକୁ ବିକଳ୍ପରେ ଲେଖାଯାଇ ପାରିବ । ଏ ପ୍ରସଙ୍ଗରେ ଆପଣଙ୍କ ମତ କ'ଣ ?

**ଉତ୍ତର :**

ଶ୍ରଦ୍ଧେୟ ସଂତୋଷ

ସଂବୋଧନ ପରେ କିଛି ଶୂନ୍ୟ ସ୍ଥାନ ନିଶ୍ଚୟ ରହୁଥିବା ଯୋଗୁଁ କମା ଲେଖିବା ବାହୁଲ୍ୟ ମାତ୍ର ।

ଧକ୍କା, ଶୁଲ୍କ, ଉଦ୍ଧା, ଶୁଷ୍କ, ତସ୍କର ଭଳି ଉତ୍କଳ;

ରକ୍ତ, ଗୁପ୍ତ, ଅସ୍ତ ଭଳି ଉତ୍ତର;

ଦୁଗ୍ଧ, ଲବ୍ଧ ଭଳି ସ୍ନିଗ୍ଧ;

ନକ୍ସା, ଲିପ୍ସା ଭଳି କୁତ୍ସା;

ଗଚ୍ଛ, ପୁଷ୍ପ, ପରସ୍ପର ଭଳି ଉତ୍କଳ ମଧ୍ୟ ଲେଖା ହୋଇ ପାରନ୍ତା । କିନ୍ତୁ ହୁଏ ନାହିଁ । ଆମେ ଉତ୍କଳ, ଉତ୍ତର, ଯୁଦ୍ଧ, କୁତ୍ସା, ଉତ୍ପଳ ଲେଖୁଁ । ଏକାଧିକ ପ୍ରକାର ବନାନ ସମ୍ଭବ ହେଉଥିବା ସ୍ଥଳେ ଆମକୁ ସରଳତମ ବନାନଟିକୁ ଗ୍ରହଣ କରିବାକୁ ପଡ଼ିବ । ଲିପି ସଂସ୍କାର ମଧ୍ୟ କ୍ରମାଗତ ଭାବରେ ଚାଲିଥାଏ । ଏ ବିଷୟରେ ଶେଷ କଥା ବୋଲି କିଛି ନାହିଁ ।

ନ୍/ନ୍ତ, ମ୍/ ନ୍ମ ମଧ୍ୟରୁ ନ୍ତ,ନ୍ମ ର ମୁଁ ପକ୍ଷଧର ।

ଶୁଭେଚ୍ଛା ସହ

ପ୍ର.କୁ.ତ୍ରିପାଠୀ

୧୮ ଫେବ୍ରୁଆରି ୧୯୯୯

ପ୍ରଫୁଲ୍ଲ କୁମାର ତ୍ରିପାଠୀ
ଇଂଲିଶ୍ ବିଭାଗ
ବ.ଜ.ବି. ମହାବିଦ୍ୟାଳୟ, ଭୁବନେଶ୍ୱର

**ପ୍ରଶ୍ନ.୧୨**: ଓଡ଼ିଆ ଭାଷାରେ ବ୍ୟବହୃତ ‍୍ ଚିହ୍ନର ନାଁ କ'ଣ ? ହଳନ୍ତଦ୍ୱାରା ସବୁ ଯୁକ୍ତାକ୍ଷରକୁ ଲେଖିହେବ କି ? 'ଓଡ଼ିଆ ବନାନ ସାଧକ' ସମ୍ପର୍କିତ ଏକ ସମ୍ବାଦ 'ସମ୍ବାଦ'ରେ ବାହାରିଚି । ଏହା କ'ଣ ଏକ ବହି ?

**ଉତ୍ତର :**

ଶ୍ରଦ୍ଧେୟ ସନ୍ତୋଷ

ପ୍ରଥମେ ୨୦.୩.୧୯୯୯ ପତ୍ରର ଉତ୍ତର :

'୍' ଚିହ୍ନକୁ ଖଣ୍ଡ ଅ-କାର କହନ୍ତି । ହଳନ୍ତ ଦ୍ୱାରା ସବୁ ଯୁକ୍ତାକ୍ଷର ଲେଖି ହେବ ନାହିଁ । କାରଣ ସ୍ପ,ଷ୍ଟ,ସ୍କ ଆଦି ଶବ୍ଦର ଆଦ୍ୟାକ୍ଷର ମଧ୍ୟ ହୁଏ । କିନ୍ତୁ 'ଙ୍କ,ଙ୍ଖ,ଙ୍ଗ ...ଇତ୍ୟାଦି ଓଡ଼ିଆ ଶବ୍ଦର ପ୍ରଥମ ଅକ୍ଷର ହୋଇଥିବାର ଉଦାହରଣ କାହିଁ ?

'ଂକ,ଂଖ,ଂଗ...' ଇତ୍ୟାଦିର ସାନଶୂନ୍ 'ଅନୁସ୍ୱାର' ବଦଳରେ 'ପଂଚମାକ୍ଷରର ପ୍ରତିନିଧି ଚିହ୍ନ' ନାମରେ ନାମିତ ହେଲେ ଭଲ ।

ସର୍ବଦା ସନ୍ଧି କରିବାକୁ କେହି ବାଧ୍ୟ ନୁହେଁ । ସନ୍ଧି ନ କରି ଲେଖିଲେ 'ବିଦ୍ୟୁତ୍‌ଲତା' ଠିକ୍, କିନ୍ତୁ ସନ୍ଧି କଲେ 'ତ୍‌ଲ' ଅଂଶଟି 'ଲ୍ଲ' ହେବ । 'ଓଡ଼ିଆ

ବନାନ ସାଧକ' ଖଣ୍ଡିଏ ବହି ନୁହେଁ । ଏହା କମ୍ପ୍ୟୁଟରରେ ବ୍ୟବହାର ଉପଯୋଗୀ ଗୋଟିଏ C D ବା କମ୍ପାକ୍ଟ ଡିସ୍କ । ଏହା ଦ୍ୱାରା ଯାନ୍ତ୍ରିକ ପଦ୍ଧତିରେ ବନାନ ତ୍ରୁଟି ସଂଶୋଧନ କରାଯାଉଛି ।

ଶୁଭେଚ୍ଛା ସହ
ପ୍ରଫୁଲ୍ଲ କୁମାର ତ୍ରିପାଠୀ
୮.୫.୧୯୯୯

ପ୍ରଫୁଲ୍ଲ କୁମାର ତ୍ରିପାଠୀ
ଇଂଲିଶ୍ ବିଭାଗ
ବ.ଜ.ବି.ମହାବିଦ୍ୟାଳୟ, ଭୁବନେଶ୍ୱର

**ପ୍ରଶ୍ନ.୧୩**: କିଛି କିଛି ଯୁକ୍ତାକ୍ଷରକୁ ବିକଳ୍ପରେ ଅନୁସ୍ୱାର ମାଧ୍ୟମରେ ଲେଖାଯାଇ ପାରିବ; କିନ୍ତୁ କିଛି ଅନୁସ୍ୱାରଯୁକ୍ତ ବନାନକୁ ବିକଳ୍ପଭାବେ ଲେଖାଯାଇ ପାରିବନି । ଏ ପ୍ରସଙ୍ଗରେ ଆପଣଙ୍କ ଯୁକ୍ତି କ'ଣ ?

ପ୍ରକୃତରେ ଡକ୍‌ଟର୍/ଡକ୍ଟର୍‌ର ସଂକ୍ଷିପ୍ତ ରୂପ କ'ଣ ହେବା କଥା ? 'ନମ୍ବର'/'ନଂବର୍'ର ସଂକ୍ଷିପ୍ତ ରୂପ ନଂ ଏବଂ ଇଂରାଜି Number ର ସଂକ୍ଷିପ୍ତ ରୂପ No. । ଓଡ଼ିଆ ଓ ଇଂରାଜିର ଏହି ସଂକ୍ଷିପ୍ତ ରୂପର ସାମ୍ୟରେ କ'ଣ କାରଣ ଥାଇପାରେ ?

**ଉତ୍ତର :**

ଶ୍ରଦ୍ଧେୟ ସଂତୋଷ,

ଞ+ଜ = ଞ୍ଜ ହୁଏ । କିଂତୁ ଞ+ଯ = ? (କିଛି ହୁଏ ନାହିଁ ।) ଏଣୁ ସଂଯମ, ସଂଯତ, ସଂଯୁକ୍ତ, ସଂଯୁକ୍ତା ଭଳି ଶବ୍ଦର ବିକଳ୍ପ ବନାନ ନାହିଁ । 'ଜ' ଓ 'ଯ'ର ଉଚ୍ଚାରଣ ସମତା ଯୋଗୁଁ ଏପରି ସଂଦେହ ସ୍ୱାଭାବିକ ।

'ଡକ୍‌ଟର୍'ର ସଂକ୍ଷିପ୍ତ ରୂପ 'ଡ.' ହେବା ଯୁକ୍ତିଯୁକ୍ତ । ତେବେ କେତେକ ବ୍ୟକ୍ତି 'ଡଃ, ଡାଃ' ଲେଖୁଛନ୍ତି ଅଭ୍ୟାସ ବଶତଃ ।

'ନଂବର୍'ର ସଂକ୍ଷିପ୍ତ ରୂପ 'ନଂ' ହୁଏତ ଇଂଲିଶ୍‌ର 'N' କୁ 'ନ' ଓ 'o' କୁ ଅନୁସ୍ୱାର କରି ଗଠିତ ହୋଇଛି ।

ଓଡ଼ିଆ ଭାଷା ପ୍ରୟୋଗର ବିଭିନ୍ନ ସୂକ୍ଷ୍ମ ବିଷୟ ପ୍ରତି ତୁମର ଅନୁସନ୍ଧିତ୍ସାକୁ ନିଜ ଭିତରେ ସକ୍ରିୟ କରି ରଖିଥାଅ । ଶୁଭେଚ୍ଛା

ପ୍ରଫୁଲ୍ଲ କୁମାର ତ୍ରିପାଠୀ
୩ ଅଗଷ୍ଟ ୧୯୯୯

ପ୍ରଫୁଲ୍ଲ କୁମାର ତ୍ରିପାଠୀ
ଇଂଲିଶ୍ ବିଭାଗ
ବ.ଜ.ବି.ମହାବିଦ୍ୟାଳୟ, ଭୁବନେଶ୍ୱର

**ପ୍ରଶ୍ନ.୧୪**: ବିବରଣ ଓ ବିବରଣୀ ମଧ୍ୟରୁ କେଉଁଟି ଠିକ୍ ?

**ଉତ୍ତର :**

ଶ୍ରଦ୍ଧେୟ ସନ୍ତୋଷ,

'ବିବରଣ' ଅର୍ଥ ବର୍ଣ୍ଣନା (ପୁଂ ଲିଂଗ)

'ବିବରଣୀ' ଅର୍ଥ ଲିଖିତ ବର୍ଣ୍ଣନା (ସ୍ତ୍ରୀ ଲିଂଗ) ।

ଉଭୟ ଠିକ୍ ।

ଏ ପ୍ରକାର ସନ୍ଦେହମୋଚନ ନିମନ୍ତେ ମୋ ସହିତ ପତ୍ରାଳାପ ବଦଳରେ ଗୋଟିଏ ଭଲ ଓଡ଼ିଆ ବା ସଂସ୍କୃତ ଅଭିଧାନର ସାହାଯ୍ୟ ନେଲେ ସମୟ ଓ ଶ୍ରମ ବଂଚିବ ।

ଶୁଭେଚ୍ଛା ସହ
ପ୍ରଫୁଲ୍ଲ କୁମାର ତ୍ରିପାଠୀ
୧୫.୧.୨୦୦୦

ପୁନଶ୍ଚ :

ମୁଁ ପାଇଥିବା କୌଣସି ପତ୍ରର ଉତ୍ତର ଦେଇନାହିଁ ଭଳି ମନେ ପଡୁନାହିଁ ।

ପ୍ରଫୁଲ୍ଲ କୁମାର ତ୍ରିପାଠୀ
ଇଂଲିଶ୍ ବିଭାଗ
ବ.ଜ.ବି.ମହାବିଦ୍ୟାଳୟ, ଭୁବନେଶ୍ୱର

**ପ୍ରଶ୍ନ.୧୫**: 'ବର୍ଣ୍ଣ/ର୍ଣ'ରେ 'ରେଫ' (ˊ) ଦିଆଯାଇ ଲେଖାଯାଏ; କିନ୍ତୁ 'କ୍ଷୁଣ୍ଣ' ରେ 'ରେଫ' ରହେନାହିଁ କାହିଁକି ?

**ଉତ୍ତର :**

ଶ୍ରଦ୍ଧେୟ ସଂତୋଷ,

ଧାତୁ 'ବୃ'+ଉନ = ବରୁଣ
+ଏନ୍ୟ = ବରେଣ୍ୟ
+ନ = ବର୍ଣ/ବର୍ଣ୍ଣ
ସୁ+ବର୍ଣ = ସୁବର୍ଣ
ଧାତୁ 'ପୂର୍'+ଅକ = ପୂରକ
+ଅନ = ପୂରଣ
+ତ = ପୂର୍ଣ/ପୂର୍ଣ୍ଣ

'ତ' ରୂପାନ୍ତରିତ ହୋଇ 'ନ' ହୋଇଛି । 'ବୃ' ଓ 'ପୂର୍'ରେ 'ର' ଥିବା ଯୋଗୁଁ ଗଠିତ ଶବ୍ଦରେ ତାହା 'ରେଫ' ରୂପରେ ରହେ ।

କିଂତୁ ପ୍ର+ସଦ୍+ତ = ପ୍ରସନ୍ନ　　ଆ+ସଦ୍+ତ = ଆସନ୍ନ
ବି+ସଦ୍+ତ = ବିଷଣ୍ଣ　　କ୍ଷୁଦ୍+ତ = କ୍ଷୁଣ୍ଣ
ଅ+କ୍ଷୁଣ୍ଣ = ଅକ୍ଷୁଣ୍ଣ

'ବି'ର ଇ-କାର ଓ 'କ୍ଷୁ'ର ଉ-କାର ଯୋଗୁଁ 'ନ୍ନ' ବଦଳରେ 'ଣ୍ଣ' ହୋଇଛି । 'କ୍ଷୁଦ୍' ଓ 'ସଦ୍'ରେ 'ର' ନ ଥିବାରୁ ରେଫ ପାଇଁ ସ୍ଥାନ କାହିଁ? ଟିକିଏ କଷ୍ଟ କରି 'ତରୁଣ ଶବ୍ଦକୋଷ' ଦେଖିଥିଲେ ଏ ପ୍ରଶ୍ନର ଉତ୍ତର ମିଳିଯାଇଥାଆନ୍ତା । ଉଚ୍ଚାରଣ 'ପୂରନ୍, ଅକ୍ଷୁନ୍‌ନ' ହେବା ବିଧେୟ ।

ଆନ୍ତରିକ ଶୁଭେଚ୍ଛା ସହ
ପ୍ରଫୁଲ୍ଲ କୁମାର ତ୍ରିପାଠୀ
୩୦ ମାର୍ଚ୍ଚ ୨୦୦୦

ପ୍ରଫୁଲ୍ଲ କୁମାର ତ୍ରିପାଠୀ
ଇଂଲିଶ୍ ବିଭାଗ
ବ.ଜ.ବି. ମହାବିଦ୍ୟାଳୟ, ଭୁବନେଶ୍ୱର

**ପ୍ରଶ୍ନ.୧୬**: 'ପୁରୁଷ'ର ସଂକ୍ଷିପ୍ତ ରୂପ 'ପୁ' ହେବା କଥା । କିନ୍ତୁ ଲିଙ୍ଗ ପ୍ରସଙ୍ଗରେ 'ପୁଂ' ଲେଖିବାର କାରଣ କ'ଣ ?

**ଉତ୍ତର :**

୧୮.୫.୨୦୦୦

ଶ୍ରଦ୍ଧେୟ ସଂତୋଷ

ସଂସ୍କୃତ 'ପୁଂ'ର ଅର୍ଥ ପୁରୁଷ । ଏହା 'ପୁଂକେଶର, ପୁଂଗବ, ପୁଂଲିଂଗ, ପୁଂସତ୍ୱ, ପୁଂସ୍ତ୍ୱ, ନପୁଂସକ' ଭଳି ଶବ୍ଦରେ ଲାଗିଛି । ଏ ଗୁଡ଼ିକୁ 'ପୁ' କହିବା ଓ ଲେଖିବା ସମୀଚୀନ ନୁହେ । 'ପୁଂ'ରେ ମୂଳତଃ ଅନୁସ୍ୱାର ଥିବା ହେତୁ 'ପୁଙ୍କେଶର, ପୁଙ୍ଗବ' ଭଳି ବନାନ ଅଗ୍ରହଣୀୟ ।

ଶୁଭେଚ୍ଛା ସହ

ପ୍ରଫୁଲ୍ଲ କୁମାର ତ୍ରିପାଠୀ

ବ.ଜ.ବି. ମହାବିଦ୍ୟାଳୟ, ଭୁବନେଶ୍ୱର ୭୫୧୦୧୪

**ପ୍ରଶ୍ନ.୧୭**: ଇଂରାଜି ଶବ୍ଦରେ 'କ' ଉଚ୍ଚାରଣକୁ ବେଳେ ବେଳେ C, Ch, K ଆଦି ବନାନରେ ଲେଖାଯାଏ । ତେବେ ଏହା ପାଇଁ କିଛି ସୂତ୍ର ଅଛି କି ?

**ଉତ୍ତର :**

ଭୁବନେଶ୍ୱର/୩୧.୫.୨୦୦୦

ଶ୍ରଦ୍ଧେୟ ସଂତୋଷ

କେଉଁଠି କ ପାଇଁ C ତ ଆଉ କେଉଁଠି Ch ବା K ହୁଏ । ସୂତ୍ର କିଛି ନାହିଁ । ଲୋକାଚାର ଓ ପରଂପରାକୁ ଧରି ଯେଉଁ ଭାଷା ଚାଲିଛି ତହିଁର କଥିତ ଓ ଲିଖିତ ରୂପ ମଧ୍ୟରେ ପାର୍ଥକ୍ୟ ରହିବା ଅସ୍ୱାଭାବିକ ନୁହେଁ । ଫାଦର୍ କାମିଲ୍ ବୁଲକେଙ୍କର 'ଅଁଗରେଜୀ ହିଂଦୀ କୋଶ' ପାଖରେ ଥିଲେ ଶବ୍ଦର ବନାନ, ଉଚ୍ଚାରଣ ଓ ଅର୍ଥକୁ ଯେତେ ଶୀଘ୍ର ବୁଝିହେବ ତାହା ନିଶ୍ଚୟ ପରୀକ୍ଷଣୀୟ ।

ମୁଁ ଏବେ ଅନ୍ୟ ପ୍ରକାର ଅଧ୍ୟୟନ ଓ ଲିଖନ ପ୍ରତି ଆଗ୍ରହୀ ହୋଇଥିବା ହେତୁ ଲଂବା ଚିଠି ଲେଖି ପାରୁନାହିଁ ।

ଆଂତରିକ ଶୁଭେଚ୍ଛା ସହ

ପ୍ରଫୁଲ୍ଲ କୁମାର ତ୍ରିପାଠୀ

୩୧.୫.୨୦୦୦

**ପ୍ରଶ୍ନ.୧୮** : ଓ୍ୱ ଗୋଟିଏ ବର୍ଣ୍ଣ ନା ଯୁକ୍ତବର୍ଣ୍ଣ ?

**ଉତ୍ତର :**

ଭୁବନେଶ୍ୱର

ଶ୍ରଦ୍ଧେୟ ସଂତୋଷ,

'ଓ୍ୱ' ଗୋଟିଏ ଏକକ ଅକ୍ଷର । ଏହାର ଦୃଶ୍ୟମାନ ରୂପରେ ଓ ତଳେ ୱ-ଫଳା ଥିବାରୁ କେତେକ ଆଲୋଚକଙ୍କ ମନରେ ଭ୍ରାନ୍ତି ସଂଚାର ହୋଇଛି ।

'ଔ' କ'ଣ ଥ ଉପରେ ଓ ?

'ପ୍ର' କ'ଣ ସ ତଳେ ଏ ?

ଷ କ'ଣ ଷ ତଳେ ଓ ?

ଛ କ'ଣ ଚ ତଳେ ଥ, ଯେମିତି ନ୍ଥ ସ୍ଥ ?

ଙ କ'ଣ ଡ ସହିତ ଅନୁସ୍ୱାର ?

ଏମିତି ପ୍ରତିପ୍ରଶ୍ନଦ୍ୱାରା ହିଁ ଆମକୁ ମୂଳ ପ୍ରଶ୍ନର ଉତ୍ତର ଖୋଜିବାକୁ ପଡ଼ିବ । ଓଡ଼ିଆରେ ବହୁବିଧ ଉଚ୍ଚାରଣ ଭଳି ବହୁବିଧ ବନାନ ମଧ୍ୟ ଚଳୁଛି । ସମରୂପତା ନିମନ୍ତେ ପ୍ରତ୍ୟେକ ଲେଖକ ନିଜଦ୍ୱାରା ସମର୍ଥିତ ବନାନ ଧାରାର ସମର୍ଥକ ହେବା ଆବଶ୍ୟକ ।

ଶୁଭେଚ୍ଛା ସହ
ପ୍ରଫୁଲ୍ଲ କୁମାର ତ୍ରିପାଠୀ
୫.୬.୨୦୦୦

**ପ୍ରଶ୍ନ.୧୯** : ଦୀର୍ଘ 'ର' ଥାଇ କୌଣସି ଶବ୍ଦ ଆପଣ ପଢ଼ିଛନ୍ତି କି ? C.O ସଂକ୍ଷିପ୍ତ ରୂପର ବିଭିନ୍ନ ଅର୍ଥ ଥାଏ କାହିଁକି ?

**ଉତ୍ତର :**

ଭୁବନେଶ୍ୱର
୭.୯.୨୦୦୦

ଶ୍ରଦ୍ଧେୟ ସଂତୋଷ

ଦୀର୍ଘ 'ର' ଲାଗିଥିବା କୌଣସି ଶବ୍ଦ ମୁଁ ଏ ପର୍ଯ୍ୟନ୍ତ ଓଡ଼ିଆରେ ଦେଖିନାହିଁ । ଅବଶ୍ୟ 'ପିତୃୃଣ' ଭଳି ଶବ୍ଦରେ ଏହା ର-କାର ରୂପେ ବ୍ୟବହୃତ ହୋଇଛି ।

ତେବେ ମୁଁ 'ପିତୃଋଣ' ଲେଖିବାର ପକ୍ଷପାତୀ । ଓଡ଼ିଆମାନେ 'ର ଓ ର' କୁ 'ଋ' ରୂପେ ଉଚ୍ଚାରଣ କରନ୍ତି, କିନ୍ତୁ ଅନ୍ୟାନ୍ୟ ଆର୍ଯ୍ୟ ଭାରତୀୟ ଭାଷାଭାଷୀଙ୍କ ତୁଣ୍ଡରୁ ଏହା ପ୍ରାୟ 'ରି' ପରି ଶୁଭେ ।

C.O. = Commanding Officer

CO = Company, Country, Cobalt

C.O = Carbon Monoxide

C/O = Care of ଏପରି ଲେଖା ଲୋକାଚାର ସିଦ୍ଧ । ଏଣୁ 'କାହିଁକି ?' ପ୍ରଶ୍ନର ଉତ୍ତର ସନ୍ଧାନ ନିରର୍ଥକ । ମଣିଷର ଭାଷା ଏ ପର୍ଯ୍ୟନ୍ତ ପ୍ରଥା ଆଧାରିତ ହୋଇ ଚଳି ଆସୁଛି । ତେଣୁ ଅସଙ୍ଗତି ଓ ଅଯୌକ୍ତିକତା ରହିବା ସ୍ୱାଭାବିକ ।

ଶୁଭେଚ୍ଛା ସହ

ପ୍ରଫୁଲ୍ଲ କୁମାର ତ୍ରିପାଠୀ

**ପ୍ରଶ୍ନ.୨୦**: ସଭାରେ ବହୁତ କମ୍ ଲୋକ ଥିଲେ । ଏହି ବାକ୍ୟରେ 'ବହୁତ କମ୍' ଲେଖିଲେ ଅର୍ଥ ବୁଝାପଡୁଥିଲେ ବି ଏପରି ଲେଖିବା ବେଳେବେଳେ ଯୁକ୍ତିଯୁକ୍ତ ମନେ ହୁଏନି । ଆପଣଙ୍କ ସହିତ ମୁଁ ଫୋନ୍‌ରେ କଥା ହେବା ପାଇଁ ଚାହୁଁଛି ।

**ଉତ୍ତର** :

ଭୁବନେଶ୍ୱର

୮ ଜାନୁଆରି ୨୦୦୧

ଶ୍ରଦ୍ଧେୟ ସନ୍ତୋଷ,

ଯେଉଁମାନେ 'ବହୁତ କମ୍' କହୁଛନ୍ତି' ବା ଲେଖୁଛନ୍ତି ସେମାନେ 'ଅତି, ଖୁବ୍'ର ସମାର୍ଥକ ରୂପେ 'ବହୁତ' ଶବ୍ଦଟିକୁ ବ୍ୟବହାର କରୁଛନ୍ତି । ବିଶେଷଣର ବିଶେଷଣ ରୂପେ 'ଅତି, ଖୁବ୍, ଅତୀବ' ଭଳି ଶବ୍ଦ ଚଳୁଛି । 'ଅନେକ'କୁ ସଂଖ୍ୟା ଓ 'ବହୁତ'କୁ ପରିମାଣ ସୂଚାଇବା ନିମନ୍ତେ ପ୍ରୟୋଗ କରିବା ସଙ୍ଗତ ମନେ ହେଉଛି । ଆମର ଦୂରଭାଷ ସଂଖ୍ୟା: ୪୩୪୩୦୪

ଆନ୍ତରିକ ଶୁଭେଚ୍ଛା ସହ

ପ୍ରଫୁଲ୍ଲ କୁମାର ତ୍ରିପାଠୀ

୮.୧.୨୦୦୧

**ପ୍ରଶ୍ନ.୨୧** : ପଣକିଆରେ ବୋଲାଯାଉଥିବା 'କେ', 'ଦୁଣେ', 'ତିରି'ର ଅର୍ଥ କ'ଣ ? 'ତରୁଣ ଶବ୍ଦକୋଷ'ରେ ଶବ୍ଦର ଡାହାଣ ପଟକୁ କିଛିକିଛି ସ୍ଥାନରେ ସୂଚିତ [ ଚିହ୍ନଟି କ'ଣ ପାଇଁ ?

**ଉତ୍ତର :**

ଭୁବନେଶ୍ୱର

ଶ୍ରଦ୍ଧେୟ ସଂତୋଷ

'୨ × ୧ =୨'= 'ଦୁଇ ଗୁଣିତ ଏକ ସମାନ ଦୁଇ' = '୨ କେ ୨'

'୨ × ୨ = ୪'= 'ଦୁଇ ଗୁଣିତ ଦୁଇ ସମାନ ଚାରି'= '୨ ଦୁଣେ ୪'

୨ × ୩ = ୬ = ତିନି ଛଅ = '୨ ତିରି ୬'

ଏଥିରୁ ବୁଝାପଡ଼େ : ଗାଣିତିକ ସୂତ୍ରକୁ ସଂକ୍ଷେପତଃ ସାଂକେତିକ ଭାବରେ କଥିତ ଶବ୍ଦ ଦ୍ୱାରା ପ୍ରକାଶ କରିବା ପାଇଁ 'କ/କେ, ଦୁଣେ,ତିରି, ...' ଭଳି ପ୍ରୟୋଗ ଓଡ଼ିଆରେ ଚଳିଆସୁଛି ।

'ତରୁଣ ଶବ୍ଦକୋଷ'ରେ [ ଚିହ୍ନଟି ତଳ ଧାଡ଼ିର ବଳକା ପାଠକୁ ଉପର ଧାଡ଼ିରେ ରଖି ପୃଷ୍ଠାରେ ସ୍ଥାନର ଅପବ୍ୟୟ ହ୍ରାସ ନିମନ୍ତେ କରା ହୋଇଛି ।

ଶୁଭେଚ୍ଛା ସହ

ପ୍ରଫୁଲ୍ଲ କୁମାର ତ୍ରିପାଠୀ

୯.୨.୨୦୦୧

**ପ୍ରଶ୍ନ.୨୨** : 'ଦେଶଜ' ଶବ୍ଦ କହିଲେ କ'ଣ ? ଆପଣ ଭାଷା ସଂପର୍କିତ ଏତେ ଲେଖାଲେଖି କରୁଛନ୍ତି, ଗୋଟିଏ ନୂଆ ଶବ୍ଦ ଗଠନ କରିପାରିବେ ?

**ଉତ୍ତର :**

ଶ୍ରଦ୍ଧେୟ ସଂତୋଷ

'ଆମ୍ବ' ଶବ୍ଦଟି ସଂସ୍କୃତ 'ଆମ୍ର'ରୁ ଆସିଛି । ଯେଉଁ ଶବ୍ଦର ଉତ୍ପତ୍ତି- ନିର୍ଣ୍ଣୟ କରି ହେଉନାହିଁ, ତାହା ଅଭିଧାନରେ 'ଦେଶଜ' ନାମରେ ଚିହ୍ନିତ । ଅଭିଧାନରେ ନ ଥିବା ଶବ୍ଦ ଯେ ଭାଷାରେ ଚଳୁନାହିଁ, ଏ କଥା ତ କହି ହେବନାହିଁ । ପ୍ରଥମେ ଲୋକମୁଖର ଭାଷା, ତାପରେ ଲେଖା ଏବଂ ତା ପରେ ଅଭିଧାନ । ମୁଁ ଯଦି 'ଆମ୍ବ' ସହିତ 'ଆଚାର'

ଯୋଡ଼ି 'ଆମ୍ଭାଚାର' ଭଳି ଏକ ଶବ୍ଦ ଗଠନ କରିବି ତା ହେଲେ ତାହା ନିଶ୍ଚୟ ଏକ ନୂଆ ଶବ୍ଦ ହେବ । କିନ୍ତୁ ଏହି ଶବ୍ଦ ଯଦି ଦୀର୍ଘକାଳ ଧରି ବହୁ ଲୋକଙ୍କଦ୍ୱାରା ବ୍ୟବହୃତ ନ ହୁଏ ତା ହେଲେ ଅଭିଧାନ ପର୍ଯ୍ୟନ୍ତ ପହଞ୍ଚି ପାରିବ ନାହିଁ । ଶବ୍ଦର ପ୍ରୟୋଗ ଦ୍ୱାରା ହିଁ ତାହାର ଅର୍ଥ ପରିସ୍ଫୁଟିତ ହୁଏ । କର=ହାତ, କର=ଖଜଣା, କର=କିରଣ ।

ଶୁଭେଚ୍ଛା ସହ

ପ୍ରଫୁଲ୍ଲ କୁମାର ତ୍ରିପାଠୀ

୧୭ ମାର୍ଚ୍ଚ ୨୦୦୧

ଭୁବନେଶ୍ୱର

**ପ୍ରଶ୍ନ.୨୩**: Pocket Oxford English Dictionaryରେ ଥିବା ଶବ୍ଦର ବର୍ଣ୍ଣ ଉପରେ ଏକ ଛୋଟ ଗାର (-) ଦିଆଯାଇଥାଏ ପୁଣି କିଛି ସ୍ଥାନରେ ~ ଚିହ୍ନ ଥାଏ । ତାହାର ନାଁ କ'ଣ ?

**ଉତ୍ତର :**

ଭୁବନେଶ୍ୱର

ଶ୍ରଦ୍ଧେୟ ସନ୍ତୋଷ

ଯେଉଁ ଅଭିଧାନ ବିଷୟ ଲେଖିଛ, ତାହା ମୁଁ ଦେଖିନାହିଁ ।
ତେବେ ଶବ୍ଦରେ ବ୍ୟବହୃତ ଇଂଲିଶ୍ ଅକ୍ଷରଗୁଡ଼ିକ ଉପରେ ଯେଉଁ ସାନ ଗାର (-) ଓ କମା ଭଳି ଚିହ୍ନ (,) ଥାଏ ତାହା ସ୍ୱରାଘାତର ସୂଚକ । ଯଥାର୍ଥ ଉଚ୍ଚାରଣ ନିମନ୍ତେ ଏହି ଚିହ୍ନଗୁଡ଼ିକ ଇଙ୍ଗିତ ଦିଅନ୍ତି । ~ ଏହି ଚିହ୍ନଟିକୁ tilde କହନ୍ତି । ପୂର୍ବବର୍ତ୍ତୀ ଶବ୍ଦକୁ ବାରମ୍ବାର ନ ଲେଖି ସ୍ଥାନ ସଂଚୟ ନିମନ୍ତେ ଏହି ଚିହ୍ନ ବ୍ୟବହୃତ ହୁଏ । ଦୃଷ୍ଟାନ୍ତ: double, ~ -barrelled, ~ -edged, ~ -entendre, ~ -entry.
ଅର୍ଥାତ୍ ପ୍ରତ୍ୟେକ ~ ଏଠାରେ double ପରିବର୍ତ୍ତେ ଲେଖାହୋଇଛି । ପୂର୍ବରୁ ଥରେ ଅଧେ ଜଣାଇଥିଲି । ଏବେ ପୁଣି ଜଣାଉଛି ଯେ ଏ ପ୍ରକାର ପତ୍ରାଳାପ ଯୋଗୁଁ ମୋର ଧ୍ୟାନଚ୍ୟୁତି ଘଟୁଛି ।

ଶୁଭେଚ୍ଛା ସହ

ପ୍ରଫୁଲ୍ଲ କୁମାର ତ୍ରିପାଠୀ

୧.୬.୨୦୦୧

**ପ୍ରଶ୍ନ. ୨୪**: 'ମୋର' ଶବ୍ଦଟି ସଂସ୍କୃତ ନା ଓଡ଼ିଆ କିପରି ଜାଣିବ ?

**ଉତ୍ତର :**

ଶ୍ରଦ୍ଧେୟ ସଂତୋଷ

'ସଂସ୍କୃତ' ଏକ ପ୍ରାଚୀନ ଓ ବିସ୍ତୃତତର ଭାଷା ହୋଇଥିବାରୁ ସେଠାରୁ ହିଁ ଓଡ଼ିଆକୁ ଶବ୍ଦ ଆସିବା ସଂଭବ । 'ମୋର' ଶବ୍ଦଟି ସଂସ୍କୃତ ବୋଲି କିପରି କହି ହେବ ? ଏହି ଶବ୍ଦଟି ସଂସ୍କୃତରେ ପ୍ରଚଳିତ ଥିବାର କୌଣସି ଦୃଷ୍ଟାଂତ କାହିଁ ? ମମ= ମୋର ହେଲେ ସୁଦ୍ଧା 'ମମତା, ମମତ୍ୱ, ନିର୍ମମ' ଭଳି 'ମୋରତା, ମୋରତ୍ୱ, ନିର୍ମୋର' ଭଳି ପ୍ରୟୋଗ ଆମକୁ ଶୁଭେନାହିଁ କି ଦିଶେନାହିଁ ।

*

ବିକ୍ଷିପ୍ତ ଚିଂତାକୁ ଶୃଂଖଳାବଦ୍ଧ କରିବା ଶିଖିଲେ ଅନେକ ସଂଦେହ ଦୂର ହୁଏ । ଅନେକ ପ୍ରଶ୍ନର ଉତ୍ତର ମଧ୍ୟ ମିଳିଯାଏ । ଶବ୍ଦଗୁଡ଼ିକର ଗଠନସୂତ୍ର ଓ ପ୍ରୟୋଗ ପ୍ରତି ଦୃଷ୍ଟି ଦେଲେ, ସେଗୁଡ଼ିକର ବ୍ୟୁତ୍ପତ୍ତି-ବ୍ୟାଖ୍ୟା ସରଳତର ହୋଇପାରିବ ।

ଆଂତରିକ ଶୁଭେଚ୍ଛା ସହ
ପ୍ରଫୁଲ୍ଲ କୁମାର ତ୍ରିପାଠୀ
୧୭.୧୦.୨୦୦୧

ପ୍ରାଧ୍ୟାପକ, ଇଂଲିସ୍ ବିଭାଗ
ବ.ଜ.ବି.ମହାବିଦ୍ୟାଳୟ, ଭୁବନେଶ୍ୱର

**ପ୍ରଶ୍ନ.୨୫**: ଓଡ଼ିଆ ଭାଷାର ବର୍ଣ୍ଣକ୍ରମ ଅ ଠାରୁ ଆରମ୍ଭ ହୋଇଥାଏ କାହିଁକି ?

**ଉତ୍ତର :**

ଶ୍ରଦ୍ଧେୟ ସଂତୋଷ,

ଗୋଟିଏ ଜନଗୋଷ୍ଠୀରେ ପ୍ରଚଳିତ ଭାଷାର ମୌଳିକ ଧ୍ୱନିଗୁଡ଼ିକର ନିର୍ଦ୍ଦିଷ୍ଟ ରେଖାରୂପକୁ ନିର୍ଦ୍ଦିଷ୍ଟ କ୍ରମରେ ସଜାଇ ଦିଆଯାଇଥାଏ । ଓଡ଼ିଆରେ ସ୍ୱର ଓ ବ୍ୟଂଜନ ଧ୍ୱନି ଅନୁସାରେ ଏହି ସଜ୍ଜୀକରଣ ପ୍ରାଚୀନ ବ୍ରାହ୍ମୀ ଲିପିର ଆଦର୍ଶରେ କରା ହୋଇଛି । ଜନଗୋଷ୍ଠୀର କ୍ରମାଗତ ସାମୂହିକ ପ୍ରଚେଷ୍ଟାର ଫଳ ଆମର ଏ ବର୍ଣ୍ଣମାଳା । ଲିପି ସୃଷ୍ଟିର ସିଦ୍ଧାଂତ ଅଧ୍ୟୟନଦ୍ୱାରା ଏ ସଂପର୍କୀୟ ବୋଧ ପରିଚ୍ଛନ୍ନ ହୋଇପାରିବ ।

ମୋର ପୂର୍ବ ପତ୍ରରେ ବୋଧହୁଏ ଯଥାମୂଲ୍ୟ ଡାକ ଟିକଟ ଲଗାଇ ନ ଥିଲି । ସେଥି ଯୋଗୁଁ ଯେଉଁ ଅସୁବିଧା ହୋଇଥାଇପାରେ ସେଥି ନିମନ୍ତେ ଦୁଃଖ ପ୍ରକାଶ କରୁଛି

ଶୁଭେଚ୍ଛା ସହ

ପ୍ରଫୁଲ୍ଲ କୁମାର ତ୍ରିପାଠୀ

୩.୧୧.୨୦୦୧

**ପ୍ରଶ୍ନ.୨୬**: ଆପଣ ମୋତେ ଚିଠିରେ ବଂଲା ଭାଷା ଶିଖେଇ ପାରିବେ ? ବଂଲା ଭାଷା ଶିଖିବା ପାଇଁ କେଉଁ ବହି ସହାୟକ ହେବ, ଜଣେଇଲେ ଖୁସି ହେବି ।

**ଉତ୍ତର :**

ଶ୍ରଦ୍ଧେୟ ସଂତୋଷ

ପତ୍ର କିଂବା ଅନ୍ୟ କୌଣସି ମାଧ୍ୟମରେ ବଂଲା ଭାଷା ଶିଖାଇବା ଭଳି ଯୋଗ୍ୟତା ମୋର ନାହିଁ ।

କେଉଁ ବହି ଏଥିପାଇଁ ସହାୟକ ହୋଇପାରେ, ତାହା ସୁଦ୍ଧା ମୋତେ ଜଣାନାହିଁ ।

ଶୁଭେଚ୍ଛା ସହ

ପ୍ରଫୁଲ୍ଲ କୁମାର ତ୍ରିପାଠୀ

୬.୧୧.୨୦୦୧

ଇଂଲିସ୍ ବିଭାଗ, ବ.ଜ.ବି.ମହାବିଦ୍ୟାଳୟ

ଭୁବନେଶ୍ୱର, ୭୫୧୦୧୪

**ପ୍ରଶ୍ନ.୨୭**: ଶବ୍ଦର ଅର୍ଥ ଥାଏ । ଅଭିଧାନଗୁଡ଼ିକରେ କ ଖ ଆଦି ବର୍ଣ୍ଣଗୁଡ଼ିକର ମଧ୍ୟ ଅର୍ଥ ରହିଛି । ତେବେ 'ସ୍ୱ' ଅର୍ଥ ଯଦି 'ନିଜ' ହୁଏ 'ସ୍ୱର' ଅର୍ଥ 'ନିଜର' ହୋଇପାରିବ କି ?

**ଉତ୍ତର :**

ଶ୍ରଦ୍ଧେୟ ସଂତୋଷ

୧୨.୧୧ ର ପତ୍ର ମିଳିଛି । ଏକାକ୍ଷରୀ ଶବ୍ଦ ମଧ୍ୟ ଅନେକାର୍ଥକ ହୋଇଥାଏ । ତେଣୁ ଶବ୍ଦର ଅର୍ଥ ପୂର୍ବାପର ସଂବଂଧ ଏବଂ ପ୍ରୟୋଗ-ସିଦ୍ଧତା ଉପରେ ନିର୍ଭର କରେ । ଲେଖକ, ପାଠକ ଓ ପାଠ ମଧ୍ୟରେ ସମ ବ୍ୟବଧାନ ରହିଲେ ବକ୍ତବ୍ୟ ସଂପ୍ରସାରିତ ହୁଏ । ଅତିଜ୍ଞାନୀ ଲେଖକ ସହିତ ଅଳ୍ପଜ୍ଞାନୀ ପାଠକର ଭାବଗତ ସଂପର୍କ ହୋଇପାରେ ନାହିଁ ।

'ସ୍ୱ=ନିଜ ।    ସ୍ୱର = ନିଜର' - ଏ ପ୍ରକାର ଗାଣିତିକ ଯୁକ୍ତି ଭାଷାରେ ଚଳେନାହିଁ । 'ଧାତୁ'କୁ ଆମେ କ୍ରିୟାମୂଳ ବୋଲି ବୁଝିଲେ ସୁବିଧା ହୁଏ । 'କର୍' ଧାତୁର ରୂପାବଳି ଲେଖି ବସିଲେ 'କର, କରା, କରି, କରୁ, କରିବି, କରିଛି, କରୁଛି' ଇତ୍ୟାଦି ବାହାରିବ ।

ଏ ସବୁ କଥା ମନମନ୍ଥନ ବା ଗ୍ରନ୍ଥପଠନ ଦ୍ୱାରା ଭଲ ଭାବରେ ସାଧିତ ହୁଏ । କେବଳ ପତ୍ର ବିନିମୟକୁ ଏକମାତ୍ର ପନ୍ଥା ବୋଲି ନ ବିଚାରିବାକୁ ଅନୁରୋଧ ।

ଶୁଭେଚ୍ଛା ସହ

ପ୍ରଫୁଲ୍ଲ କୁମାର ତ୍ରିପାଠୀ

୨୦.୧୧.୨୦୦୧

ପ୍ରାଧ୍ୟାପକ, ଇଂଲିସ୍ ବିଭାଗ
ବ.ଜ.ବି.ମହାବିଦ୍ୟାଳୟ, ଭୁବନେଶ୍ୱର

**ପ୍ରଶ୍ନ.୨୮** : ମୁଁ ଓଡ଼ିଆ ସାଙ୍ଗିଆ ସମ୍ପର୍କିତ କିଛି ପଢ଼ାପଢ଼ି କରୁଛି । ଏ ପ୍ରସଙ୍ଗରେ ପ୍ରବନ୍ଧଟିଏ ଲେଖିବା ପାଇଁ ଭାବୁଛି । ଆପଣଙ୍କ ମତାମତ ଜଣେଇବେ ।

**ଉତ୍ତର :**

୦୦୪, ସୂର୍ଯ୍ୟ ଏପାର୍ଟମେଣ୍ଟ
ଭୁବନେଶ୍ୱର-୭୫୧୦୧୪

ଶ୍ରଦ୍ଧେୟ ସନ୍ତୋଷ

ତୁମର ୨୮ ଜୁନ୍ ୨୦୦୩ ଦିନାଙ୍କିତ ପତ୍ର ଆମର ଖରାଛୁଟି ଓ ମୋର ବସା-ବଦଳ ଯୋଗୁଁ ମୋତେ ବିଳମ୍ବରେ ମିଳିଲା । ଗବେଷଣା ପାଇଁ ତୁମେ ବାଛିଥିବା ବିଷୟଟିର ବ୍ୟାପ୍ତି ଉଭୟ କାଳ ଓ ସ୍ଥାନ ଦୃଷ୍ଟିରୁ ସୁଦୂର ପ୍ରସାରିତ । ଏହି କାର୍ଯ୍ୟରେ ଆହୁରି ଦୀର୍ଘକାଳ ଧରି ନିଷ୍ଠା ଓ ଧୈର୍ଯ୍ୟ ସହକାରେ ଲିପ୍ତ ରହିବାକୁ ପଡ଼ିବ । ପୌରାଣିକ ନାମଗୁଡ଼ିକୁ ଲକ୍ଷ୍ୟ କରାଯାଉ । ଦଶରଥ, ରାମ, କୃଷ୍ଣ, ଲକ୍ଷ୍ମଣ, ଦୁଷ୍ମନ୍ତ, ଅହଲ୍ୟା, ଦ୍ରୌପଦୀ, ରାବଣ, ଗଣେଶ, ଶିବ, ଲକ୍ଷ୍ମୀ...କାହିଁ ? କାହାରି କୌଣସି ପରିବାର-ନାମ ଥିବାର ଜଣା ଯାଉନାହିଁ । ଇତିହାସର ନାମଗୁଡ଼ିକୁ ଦେଖାଯାଉ । ଆକବର, ବାବର, ଔରଙ୍ଗଜେବ, କନିଷ୍କ, ଅଶୋକ, ଖାରବେଳ...ଏମାନଙ୍କର ପରିବାର-ନାମ ଥିଲେ ସୁଦ୍ଧା ଆମର ପ୍ରୟୋଜନରେ ଲାଗୁନାହିଁ । ଏବେ ପୁରୋହିତ, ହୋତା,

ସେନାପତି, ନାୟକ, ପଂଡା, ସିଂହ, ଦ୍ୱିବେଦୀ, ତ୍ରିବେଦୀ, ଚତୁର୍ବେଦୀ, ତ୍ରିପାଠୀ, ପାଠୀ, ଶର୍ମା, ମୁଖୋପାଧ୍ୟାୟ ଭଳି ନାମାବଳି ବିଶ୍ଳେଷଣ କଲେ ସ୍ପଷ୍ଟତଃ ଜଣାପଡୁଛି ଯେ ଏ ଗୁଡ଼ିକ ବୃତ୍ତି/କର୍ମ-ଅନୁସାରୀ ନାମ । ପାର୍ସୀମାନେ ଇଂଜିନିଅର୍, ଡକ୍ଟର୍, କଂଟ୍ରାକ୍ଟର୍, ବାଟ୍‌ଲିବାଲା ଭଳି ଶବ୍ଦକୁ ପରିବାର-ନାମ ରୂପେ ବ୍ୟବହାର କରଂତି ।

ଏଭଳି ଏକ ବିସ୍ତାରିତ ନାମ-ସୂଚୀ ପ୍ରସ୍ତୁତ କରିବା ପାଇଁ ବିଭିନ୍ନ ଅଂଚଳର ଦୂରଭାଷ ନିର୍ଦ୍ଦେଶିକା, ମତଦାତା ତାଲିକା ଅଧ୍ୟୟନ କରିବା ଲାଭପ୍ରଦ ହୋଇପାରେ । ଏ କାମରେ ଲାଗି ରହିଲେ ସମୟ କ୍ରମେ ତାହା ଏକ ନିର୍ଦ୍ଦିଷ୍ଟ ରୂପ ଧାରଣ କରିବ । ଏବେ ଯାହା ରହସ୍ୟ, ତାହା ତୁମର ସାଧନା ଯୋଗୁଁ ସମସ୍ତଙ୍କର ବୋଧଗମ୍ୟ ହେବ ।

୫୮ ବର୍ଷ ପୂରିଲା । ଏ ମାସ ଶେଷଦିନ ମୁଁ ଅବସର ଗ୍ରହଣ କରୁଛି ।

ଆଂତରିକ ଶୁଭେଚ୍ଛା ସହ

ପ୍ରଫୁଲ୍ଲ କୁମାର ତ୍ରିପାଠୀ

୧୬ ଅଗଷ୍ଟ ୨୦୦୩

**ପ୍ରଶ୍ନ.୨୯** : ମୁଁ ଜାଣିବାକୁ ପାଇଲି, ଆପଣ ଏକ ସରକାରୀ ଅଭିଧାନ ପ୍ରଣୟନ କାର୍ଯ୍ୟ (ଓଡ଼ିଶା ସାହିତ୍ୟ ଏକାଡେମୀ) ସହିତ ସଂପୃକ୍ତ ଅଛନ୍ତି । କେଉଁଯାଏ ଗଲାଣି ?

ଗୋଟିଏ ଶବ୍ଦ ଉଚ୍ଚାରଣ ସହିତ 'ଫ' ଧ୍ୱନି ଉଚ୍ଚାରିତ ହୋଇଥାଏ । ଯଥା:- ଘରଫର, କାଗଜଫାଗଜ ଇତ୍ୟାଦି । ଏ ସଂପର୍କିତ ଲେଖା ଆପଣ କେଉଁଠି ପଢ଼ିଛନ୍ତି ?

ଭାବୁଛି ଭୁବନେଶ୍ୱର ଗଲେ ଆପଣଙ୍କୁ ଦେଖା କରିବି ।

**ଉତ୍ତର :**

୦୦୪, ସୂର୍ଯ୍ୟ ଏପାର୍ଟମେଂଟ୍

ଭୁବନେଶ୍ୱର-୭୫୧୦୧୪

ଶ୍ରଦ୍ଧେୟ ସଂତୋଷ

୧୯ ସେପ୍ଟେମ୍ବର୍‌ର ଚିଠି ପାଇଲି । ନା, ମୁଁ ସରକାରୀ ଅଭିଧାନ ପ୍ରଣୟନ କାର୍ଯ୍ୟ ସହିତ ଆଦୌ ସଂପୃକ୍ତ ନୁହେଁ । ଗତ ବର୍ଷ ମୋର ନାମ ତହିଁରେ ଥିଲା, କିଂତୁ ମୋର ହୃତ୍‌ପିଂଡରେ ତିନିଟି ଧମନୀ ପ୍ରତ୍ୟାରୋପଣ କରାଯିବା ହେତୁ ଚିକିତ୍ସକଙ୍କ

ପରାମର୍ଶ କ୍ରମେ ମୋତେ ଗୃହବନ୍ଦି ହେବାକୁ ପଡ଼ିଛି । ତେଣୁ ସ୍ୱେଚ୍ଛାରେ ମୁଁ ସେହି କାର୍ଯ୍ୟରୁ ଓହରି ଆସିଲି । ଏବେ ଶଲ୍ୟକ୍ରିୟାର ଦଶ ମାସ ପରେ ସୁଦ୍ଧା ସବୁ ପ୍ରକାର ଶାରୀରିକ କାର୍ଯ୍ୟ କରିପାରିବାର ସାମର୍ଥ୍ୟ ମୋର ନାହିଁ ।

'ଘରଫର, କାଗଜଫାଗଜ' ଧରଣର ପ୍ରୟୋଗ ସଂପର୍କରେ ଡ. ଧନେଶ୍ୱର ମହାପାତ୍ର ତାଂକର 'ଓଡ଼ିଆ ଭାଷାତତ୍ତ୍ୱ: ବିଚାର ଓ ବିଶ୍ଳେଷଣ' ବହିରେ ଦେଢ଼ ପୃଷ୍ଠା ଲେଖିଛଂତି । ଭାବ ପ୍ରକାଶକୁ ସୁନିର୍ଦ୍ଦିଷ୍ଟ ନ କରି ଅନିର୍ଦ୍ଦିଷ୍ଟ କରିବା ଆମର ସାଧାରଣ ପ୍ରକୃତି । ଏଥି ଯୋଗୁଁ ଅନେକ ଧରଣର ସାର୍ଥକ ଓ ନିରର୍ଥକ ଦ୍ୱିତ୍ୱକରଣ ଆମ ଭାଷାରେ ହୁଏ । ଲୋକଂକ କଥାକୁ କାନ ଦେଲେ ଆମେ ଏ ସବୁ ବୁଝିପାରିବା । ଏ ଭଳି ପ୍ରୟୋଗକୁ 'ସହ-ଶବ୍ଦ' ଆଖ୍ୟା ଦିଆ ଯାଇପାରେ । ଏ ଭଳି ଶବ୍ଦ-ଯୋଡ଼ିରେ ସମାର୍ଥକ, ବିପରୀତାର୍ଥକ, ଗୋଟିଏ ସାର୍ଥକ ଅନ୍ୟଟି ନିରର୍ଥକ ହୋଇପାରେ । ଏହି ପ୍ରସଂଗରେ କୌଣସି ବିସ୍ତୃତ ଆଲୋଚନା ମୋ ନଜରକୁ ଆସିନାହିଁ । ଭୁବନେଶ୍ୱର ଆସିଲେ ମୋତେ ଭେଟିବ, କି ମୋତେ ଭେଟିବା ପାଇଁ ଭୁବନେଶ୍ୱର ଆସିବ ?

ଆଂତରିକ ଶୁଭେଚ୍ଛା ସହ
ପ୍ରଫୁଲ୍ଲ କୁମାର ତ୍ରିପାଠୀ
୨୪.୯.୨୦୦୪

**ଦ୍ୱିତ୍ୱକରଣ**

ଦଳ ଦଳଦଳ (ଅନେକ ଦଳ)
କହି କହିକହି (ବାରଂବାର କହି)
ଭଲ ଭଲଭଲ (ଖୁବ୍ ଭଲ)
ହସ(ବି) ହସହସ (ବିଂ) ହସହସ ମୁହଁ

ମତାମତ (ମତ+ଅମତ)
ଚରାଚର (ଚର+ଅଚର)

ଅନ୍ୟାନ୍ୟ (ଅନ୍ୟ+ଅନ୍ୟ)
ଉତ୍ତରୋତ୍ତର (ଉତ୍ତର+ଉତ୍ତର)

ଦିନରାତି ଗୋଲ୍‌ଗାଲ୍ ଆଖପାଖ
ଆଗପଛ ଭୁଲ୍‌ଭାଲ୍ ଅଦଳବଦଳ

| | | |
|---|---|---|
| ପଚାଶଢ଼ା | ପିଲାଝିଲା | ଗଛବୃଛ |
| ଜୀବଜଂତୁ | ଗରିବଗୁରୁବା | |
| ସାଂଗସାଥୀ | ଖବରଟବର | |

ଏ କ୍ଷେତ୍ର ଏହାଠାରୁ ବ୍ୟାପକତର । ଧାରାବହିକ ଭାବେ ଶବ୍ଦ ଗ୍ରହଣ ଓ ଧାରଣ କଲେ, ତାହା ଅନ୍ୟମାନଙ୍କ ଦ୍ୱାରା 'ତଥ୍ୟ' ବା 'ଜ୍ଞାନ' ରୂପେ ଗୃହୀତ ହୋଇପାରେ ।

**ପ୍ରଶ୍ନ.୩୦** : ମୁଁ କଟକ ମାଲ୍‌ଗୋଦାମ ଅଞ୍ଚଳର କିଛି ବ୍ୟାବସାୟିକ ଶବ୍ଦ ସଂଗ୍ରହ କରିଛି । ଭାବୁଛି, ଆପଣଙ୍କୁ ଦେଖେଇବି ବୋଲି । 'ସମ୍ବାଦ'ର 'ସାରାଂଶ' ପତ୍ରିକା; ଯାହାକୁ ଆପଣ ସଂପାଦନା କରୁଥିଲେ; ତାହା ଆଉ ପ୍ରକାଶ ପାଉନାହିଁ ବୋଧହୁଏ ! କଟକର 'ବିଦ୍ୟାପୁରୀ'ରେ ଦିନେ ଆପଣଙ୍କୁ ଦେଖିଥିଲି । ଆପଣଙ୍କୁ ଚିହ୍ନିବା ପୂର୍ବରୁ ଆପଣ ସେଠାରୁ ଚାଲି ଆସିଥିଲେ । ଦେଖା ହୋଇପାରିଲା ନାହିଁ, ଦୁଃଖର କଥା ।

**ଉତ୍ତର :**

ଶ୍ରଦ୍ଧେୟ ସଂତୋଷ,

ନିର୍ଦ୍ଦିଷ୍ଟ ଗୋଷ୍ଠୀ/ବୃତ୍ତି/ପେସା/କାର୍ଯ୍ୟ ପରିସରରେ ଚଳୁଥିବା ଭାଷା ଅଧ୍ୟୟନ ଏକ ଆମୋଦଦାୟକ କାର୍ଯ୍ୟ । ଏକଦା ମୁଁ 'ଅପସଂସ୍କୃତିର ଭାଷା' କିଛିଟା ଅଧ୍ୟୟନ କରିଥିଲି ଏବଂ ତାହା 'ମାନସ' ପତ୍ରିକାରେ ନଭେମ୍ବର-୧୯୭୬ ଓ ଡିସେମ୍ବର-୧୯୭୭ ସଂଖ୍ୟାରେ ପ୍ରକାଶିତ ହୋଇ ବେଶ୍ ଆଲୋଡ଼ନ ସୃଷ୍ଟି କରିଥିଲା ।

ବର୍ଷ ମଧ୍ୟରେ ଦୁଇ ତିନି ଥର ମୋତେ କଟକର 'ଗ୍ରଂଥମଂଦିର' ଓ 'ବିଦ୍ୟାପୁରୀ' ଯିବାକୁ ପଡ଼ିଥାଏ । ସେ ଦିନ ଭେଟ ହୋଇଥିଲେ ଆମର ଚାକ୍ଷୁଷ ସାକ୍ଷାତ୍ ହୋଇଥାଅଂତା । ହଉ, ପରେ କେବେ ।

ନା, 'ସାରାଂଶ' ଆଉ ପ୍ରକାଶିତ ହେଉନାହିଁ । ସେହି ଧରଣର ପତ୍ରିକା ପାଇଁ ଆମର ପ୍ରସ୍ତୁତି ନାହିଁ ।

ଅଂତରିକ ଶୁଭେଚ୍ଛା ସହ
ପ୍ରଫୁଲ୍ଲ କୁମାର ତ୍ରିପାଠୀ
୨୬ ଏପ୍ରିଲ୍ ୨୦୦୫

୦୦୪, ସୂର୍ଯ୍ୟ ଏପାଟ୍‌ମେଂଟ୍
ଭୁବନେଶ୍ୱର-୭୫୧୦୧୪

**ପ୍ରଶ୍ନ.୩୧** : ଆପଣଙ୍କ 'ଅପସଂସ୍କୃତିର ଭାଷା' ପ୍ରବନ୍ଧଟି ପଠେଇବେ । ଡ.ଖଗେଶ୍ୱର ମହାପାତ୍ର ଏ ସଂପର୍କିତ ଏକ ପ୍ରବନ୍ଧ ଲେଖିଛନ୍ତି ବୋଲି ମୋତେ କେହି ଜଣେ କହୁଥିଲେ; ଆପଣ ଜାଣିଛନ୍ତି ? ଡକ୍ଟର୍ ପଞ୍ଚାନନ ମହାନ୍ତି କେଉଁଠି ଚାକିରି କରନ୍ତି ?

**ଉତ୍ତର :**

ଶ୍ରଦ୍ଧେୟ ସଂତୋଷ,

'ଅପସଂସ୍କୃତିର ଭାଷା: ଏକ ଅଧ୍ୟୟନ' 'ମାନସ' ପତ୍ରିକାର ୧୯୭୬ ନଭେଂବର୍ ସଂଖ୍ୟାରେ ପ୍ରକାଶ ପାଇବା ପରେ ଓଡ଼ିଶାର ବିଭିନ୍ନ ଅଂଚଳରୁ ନଅ ଜଣ ଆଗ୍ରହୀ ବଂଧୁ ମୋ ସହିତ ପତ୍ର ବିନିମୟ କରିଥିଲେ । ସେମାନଂକଠାରୁ ମିଳିଥିବା ତଥ୍ୟାଦି ପୁନର୍ବାର 'ମାନସ'ର ୧୯୭୭ ଡିସେଂବର୍ ସଂଖ୍ୟାରେ ପ୍ରକାଶିତ ହୋଇଥିଲା । ତହିଁର ଏକ ପ୍ରତିଲିପି ତୁମେ ଚାହିଁବାରୁ ଏହା ସହିତ ପଠାଇଲି । ତୁମର କିଛି କାମରେ ଲାଗିଲେ ଭଲ ।

'କଥିତ ଓଡ଼ିଆ ଭାଷା'କୁ ଗଣ ଯୋଗାଯୋଗର ଉଭୟ ଦୃଶ୍ୟ ଓ ଶ୍ରାବ୍ୟ ମାଧ୍ୟମରେ ଏ ଯାଏଁ ଅବହେଳା କରାହେଉଛି । ତୁଂଡ ପାଖକୁ ମାଇକ୍ ଓ ହାତକୁ କଲମ ଆସିଯିବା ମାତ୍ରେ ଓଡ଼ିଆମାନଙ୍କର ଭାଷା ହଠାତ୍ ସଂସ୍କୃତାୟିତ ହୋଇପଡ଼େ । ଏଣୁ ତୁଂଡରୁ କାନ ଯାଏଁ ଯାଇ ଧୀରେ ଧୀରେ ହଜି ଯାଉଥିବା ବାସ୍ତବ କଥିତ ଭାଷାକୁ ବିଧିବଦ୍ଧ ଭାବରେ ଆଭିଧାନିକ ରୀତିରେ ସଂଗ୍ରହ କରିପାରିଲେ ବଡ଼ କାମଟିଏ ହୁଅଂତା । ମୁଁ ମୋର ବୟସ, ସ୍ୱାସ୍ଥ୍ୟାବସ୍ଥା, ପାରିପାର୍ଶ୍ୱିକ ସ୍ଥିତି ଯୋଗୁଁ ଏଥିରେ ହାତ ଦେବାକୁ ଚାହୁଁନାହିଁ । ଯେଉଁ କାମ ଚାରି ଛଅ ମାସ ମଧ୍ୟରେ ସରିବନାହିଁ, ତାହା ମୋର ଆଗ୍ରହର ପରିଧି ବାହାରେ ।

ବରଂ ତୁମେ ନିଜେ ବା ତୁମ ଭଳି ଅନ୍ୟ କେହି ଏ କାର୍ଯ କଲେ ମୁଁ ଖୁସି ହେବି । ଭାଷାକୁ ଧରି ଯାହା ବା ସଂକଳନ, ଗବେଷଣା ହୁଏ ତହିଁରେ ଭଲ-ମଂଦ ଭଳି ନୈତିକ ବିଚାରର ସ୍ଥାନ କାହିଁ? ବୈଜ୍ଞାନିକ ନିର୍ଲିପ୍ତତା ସହିତ ଆବେଗ ଓ ଉଚ୍ଛ୍ୱାସ-ବିବର୍ଜିତ ଭାବରେ ହିଁ ଏ ପ୍ରକାର କାର୍ଯ କରାଯାଏ । ମୋର ମତ, ବିଶ୍ୱାସ, ଧାରଣା ଇତ୍ୟାଦିର ସର୍ବଜନଗ୍ରାହ୍ୟତା ବିଷୟରେ ମୁଁ ପ୍ରାୟତଃ ଉଦାସୀନ ରହିଥାଏଁ । ତେଣୁ ଭିନ୍ନମତ, ବିକଳ୍ପମତକୁ ସର୍ବଦା ସ୍ୱୀକାର ଓ ଗ୍ରହଣ କରିଥାଏଁ । ଏହି ମନୋଭାବ ନ ଥିଲେ 'ଅଧ୍ୟୟନ'ର ଦ୍ୱିତୀୟ ଭାଗ କାହିଁକି ପ୍ରକାଶ କରାଇଥାଅଂତି ?

କେତେ ମାସ ପୂର୍ବେ ତୁମେ କୌଣସି ଏକ ପତ୍ରିକା ପ୍ରକାଶନ ସହିତ ତୁମର ସଂପୃକ୍ତି ବିଷୟ ଲେଖିଥିଲ । ସେହି ପତ୍ରିକା ବାହାରିଲା/ବାହାରୁଛି/ବାହାରିବ କି ? ତୁମର ଭାଷାନୁରାଗ ତୁମର ଅନ୍ତର୍ଗତ ହୋଇ ତୁମକୁ ଆହୁରି ଉତ୍ସୁକ, କୌତୂହଳୀ ଓ କର୍ମନିଷ୍ଠ କରୁ, ଏହି ସଦିଚ୍ଛା ସହ ଆଜି ଏତିକି ।

ପ୍ରଫୁଲ୍ଲ କୁମାର ତ୍ରିପାଠୀ
୧୦.୭.୨୦୦୫
୦୦୪, ସୂର୍ଯ୍ୟ ଏପାର୍ଟମେଣ୍ଟ୍
ଭୁବନେଶ୍ୱର-୭୫୧୦୧୪

*ଡ.ପଞ୍ଚାନନ ମହାନ୍ତି ଏବେ କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟ, ହାଇଦରାବାଦର ଭାଷାତତ୍ତ୍ୱ ବିଭାଗର ପ୍ରଫେସର୍ ।

*ଡ.ଖଗେଶ୍ୱର ମହାପାତ୍ରଙ୍କର ଏ ବିଷୟକ ଆଲୋଚନା ମୋ ଦୃଷ୍ଟିକୁ ଆସିନାହିଁ ।

---

**ଚିଠି ଶେଷ: ପରିଶିଷ୍ଟ ଆରମ୍ଭ**

---

ଆପଣ ଜାଣିଛନ୍ତି, ଆଗେ ତ୍ରିପାଠୀବାବୁ ମାସକୁ କେତେ ଖଣ୍ଡ ଚିଠି ଲେଖୁଥିଲେ ? ତାଙ୍କ କହିବା ଅନୁସାରେ ଯେତେବେଳେ ଟେଲିଫୋନ୍ ବା ମୋବାଇଲ୍‌ର ଏତେ ସୁବିଧା ନଥିଲା ସେ ସାଙ୍ଗ-ସାଥୀ, ବନ୍ଧୁ-ବାନ୍ଧବ, ପତ୍ରିକା ସଂପାଦକ ଓ ପାଠକ-ପାଠିକାମାନଙ୍କୁ ମିଶାଇ ପ୍ରାୟ ୧୦୦ ଖଣ୍ଡ ଚିଠି ଲେଖୁଥିଲେ । ଚିଠି ପାଇଲେ ଚିଠି ଦିଅନ୍ତି । ଏବେ କିନ୍ତୁ ସେ ଆଉ ପ୍ରାୟ ଚିଠି ଲେଖୁନାହାନ୍ତି; ଖାଲି ମୋବାଇଲ୍‌ରେ ଗପୁଛନ୍ତି । ତାଙ୍କ ବିଷୟରେ ଆଉ ଅଧିକ ଜାଣିବାପାଇଁ ଆପଣ ପର ପୃଷ୍ଠାରୁ ପଢ଼ିଚାଲନ୍ତୁ ।

# ପରିଶିଷ୍ଟାବଳି

## ୧. ତ୍ରିପାଠୀଙ୍କ ଜୀବନ ଓ ସାହିତ୍ୟ

ଏଥିରେ ରହିଛି ପ୍ରଫୁଲ୍ଲ କୁମାର ତ୍ରିପାଠୀଙ୍କର ସଂକ୍ଷିପ୍ତ ଜୀବନାଲେଖ୍ୟ ଓ ତାଙ୍କର ସାହିତ୍ୟ ସାଧନା ସଂପର୍କିତ ଏକ ମୋଟାମୋଟି ଧାରଣା ।

## ୨. ତ୍ରିପାଠୀଙ୍କ ଭାଷା ଖେଳ

ତାଙ୍କର ୨୬ଟି ଭାଷାତାତ୍ତ୍ୱିକ ତଥା ଭାଷାମୂଳକ ବହିଗୁଡ଼ିକର ସଂକ୍ଷିପ୍ତ ପରିଚୟ ସାଙ୍ଗକୁ ଭାଷାଚର୍ଚ୍ଚାର ସଂକ୍ଷିପ୍ତ ଆକଳନ ।

## ୩. ପ୍ରଫୁଲ୍ଲ ଭାବକୋଷ

ଏଥିରେ ସ୍ଥାନ ପାଇଛି ତାଙ୍କର ବିଭିନ୍ନ ଭାଷାମୂଳକ ବହିଗୁଡ଼ିକରୁ ସଂଗୃହୀତ କିଛି ବାକ୍ୟାବଳି; ଯାହା ଅଭିଧାନ ବା କୋଷ ଗ୍ରନ୍ଥ ରୀତିରେ ସଂକଳିତ ।

## ୪. ଗୁରୁ - ଲିପି

ପ୍ରଥମ ଚିଠିରେ ତାଙ୍କ ହସ୍ତଲିପିର ନମୁନା ।

# ତ୍ରିପାଠୀଙ୍କ ଜୀବନ ଓ ସାହିତ୍ୟ

ପ୍ରଫୁଲ୍ଲ କୁମାର ତ୍ରିପାଠୀଙ୍କର ଜନ୍ମ ୧୯୪୫ ମସିହା ଅଗଷ୍ଟ ମାସ ୨୫ ତାରିଖରେ । ମାଆଙ୍କ ନାମ ରୁକ୍ମିଣୀ ତ୍ରିପାଠୀ, ବାପା ଗୌରାଙ୍ଗ ତ୍ରିପାଠୀ । ଗାଁ - ବରଗଡ଼ ଜିଲାର ଦେଶଭଟଲି ।

ଶ୍ରୀ ତ୍ରିପାଠୀ ବରଗଡ଼ ଜିଲାର ସିଆଲଖଣ୍ଡହଥା ଉଚ୍ଚ ବିଦ୍ୟାଳୟରୁ ୧୯୬୨ ମସିହାରେ ଏକାଦଶ ଶ୍ରେଣୀ ଉତ୍ତୀର୍ଣ୍ଣ । ପ୍ରାକ୍-ବିଶ୍ୱବିଦ୍ୟାଳୟ ଉତ୍ତୀର୍ଣ୍ଣ ପରେ ସମ୍ବଲପୁରସ୍ଥିତ ଗଙ୍ଗାଧର ମେହେର ମହାବିଦ୍ୟାଳୟରୁ ୧୯୬୬ରେ ଇଂରାଜି ସମ୍ମାନ ସହିତ ସ୍ନାତକ ଉପାଧି । ୧୯୬୮ରେ ସେହି ମହାବିଦ୍ୟାଳୟରୁ ଇଂରାଜିରେ ସ୍ନାତକୋତ୍ତର ଉପାଧିପ୍ରାପ୍ତ । ଡକ୍ଟର୍ କୃଷ୍ଣଚନ୍ଦ୍ର ମିଶ୍ରଙ୍କ ତତ୍ତ୍ୱାବଧାନରେ 'ଏ ଲିଙ୍ଗୁଇଷ୍ଟିକ ସର୍ଭେ ଅଫ୍ ସମ୍ବଲପୁରି' ପ୍ରସଙ୍ଗରେ ଇଂରାଜିରେ ନିବନ୍ଧ ଲେଖି ୧୯୯୨ ମସିହାରେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ଡକ୍ଟରେଟ୍ ଉପାଧି ଲାଭ ।

ତାଙ୍କର ଚାକିରି ଜୀବନ ଆରମ୍ଭ ହୁଏ ପାରଳାଖେମୁଣ୍ଡିସ୍ଥିତ ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ମହାବିଦ୍ୟାଳୟରେ ଇଂରାଜି ଅଧ୍ୟାପକଭାବେ ଫେବ୍ରୁଆରି ମାସ ୩ ତାରିଖ ୧୯୬୯ରେ । ପରେ ପରେ ରାଉରକେଲା ବିଜ୍ଞାନ ମହାବିଦ୍ୟାଳୟ, ବକ୍ସି ଜଗବନ୍ଧୁ ବିଦ୍ୟାଧର ମହାବିଦ୍ୟାଳୟରେ ସମୁଦାୟ ତିନିଥର, ସାମନ୍ତ ଚନ୍ଦ୍ରଶେଖର ମହାବିଦ୍ୟାଳୟ,ଫକିରମୋହନ ମହାବିଦ୍ୟାଳୟ ଓ ଶେଷରେ ବ.ଜ.ବି ମହାବିଦ୍ୟାଳୟରେ ପ୍ରାଧ୍ୟାପକ ଥାଇ ୨୦୦୩ ଅଗଷ୍ଟ ମାସ ୩୧ ତାରିଖରେ ଚାକିରିରୁ ଅବସର ।

ଛାତ୍ରାବସ୍ଥାରୁ ଶ୍ରୀ ତ୍ରିପାଠୀଙ୍କ ସାହିତ୍ୟ ସାଧନା ଆରମ୍ଭ ହୋଇଛି । ୧୯୫୮ ମସିହାରେ ତାଙ୍କର ପ୍ରଥମ ଲେଖାଭାବେ କବିତା 'କ୍ଷଣଭଙ୍ଗୁର ଜୀବନ' ପ୍ରକାଶ ପାଏ ସ୍କୁଲର ବାର୍ଷିକ ପତ୍ରିକା 'ଉଷା'ରେ । ପରେ ସେ କବିତା ସହିତ ଗପ, ଉପନ୍ୟାସ ଓ ଭାଷା ଆଲୋଚନା କ୍ଷେତ୍ରରେ ଆଗ୍ରହ ଦେଖାଇଛନ୍ତି; କିନ୍ତୁ ତାଙ୍କୁ ସ୍ୱୀକୃତି ମିଳିଛି

ଏବେ ଜଣେ ଭାଷାବିଜ୍ଞାନୀଭାବେ । ଜଣେ ଅନର୍ଗଳ ତତ୍ତ୍ୱନିଷ୍ଠ ବକ୍ତାଭାବେ ମଧ୍ୟ ତାଙ୍କର ଓଡ଼ିଶାରେ ଖ୍ୟାତି ରହିଛି ।

ତାଙ୍କର ଶତାଧିକ ଗପ, କବିତା, ପ୍ରବନ୍ଧାଦି ପତ୍ରପତ୍ରିକା, ଖବରକାଗଜଗୁଡ଼ିକରେ ପ୍ରକାଶିତ ହେବା ପରେ ପ୍ରାୟ ସବୁ ବହିଗୁଡ଼ିକରେ ସଂକଳିତ ହୋଇଛି । ତାଙ୍କର ସାତଟି କବିତା ସଂକଳନ ମଧ୍ୟରୁ ଗୋଟିଏ ସମ୍ବଲପୁରି ଭାଷାରେ 'ଲୁକ୍‌ଲୁକାନି' ପ୍ରକାଶ ପାଇଛି ୨୦୧୧ରେ । ଏହା ସହିତ ଦଶଟି ଗପ ସଂକଳନ ଓ ତିନିଟି ଉପନ୍ୟାସ ପ୍ରକାଶିତ । ତାଙ୍କର ଗପ, କବିତା କେତୋଟି ହିନ୍ଦୀ, ବଂଲା, ଗୁଜରାଟି, ତେଲୁଗୁ ଓ ଇଂରାଜି ଭାଷାରେ ଅନୁଦିତ ହୋଇ ପ୍ରକାଶ ପାଇଛି । ପୁନଶ୍ଚ କେତୋଟି କବିତା, 'ସବ୍ କେ ଶବ୍ଦ' ବହି ନାମରେ ୧୯୮୦ରେ ପ୍ରଭାତ କୁମାର ତ୍ରିପାଠୀଙ୍କଦ୍ୱାରା ହିନ୍ଦୀରେ ଅନୁଦିତ ହୋଇ ମଧ୍ୟପ୍ରଦେଶ ସାହିତ୍ୟ ପରିଷଦ, ଭୋପାଳରୁ ପ୍ରକାଶ ପାଇଛି । ବିଭିନ୍ନ ସମୟରେ ସେ ଆସାମ, ପଶ୍ଚିମବଙ୍ଗ, ବିହାର, ଝାଡ଼ଖଣ୍ଡ, ଛତିଶଗଡ଼ ମଧ୍ୟପ୍ରଦେଶ, ମହାରାଷ୍ଟ୍ର, କର୍ଣ୍ଣାଟକ, ଆନ୍ଧ୍ରପ୍ରଦେଶରେ ସାହିତ୍ୟିକ ଓ ଭାଷାତାତ୍ତ୍ୱିକ କାର୍ଯ୍ୟକ୍ରମଗୁଡ଼ିକରେ ଅଂଶଗ୍ରହଣ କରିଛନ୍ତି ।

କବିତାକୁ ପାଠକଙ୍କ ପାଖରେ ସହଜରେ ପହଞ୍ଚାଇବା ପାଇଁ ପ୍ରାୟ ୧୯୭୬ରୁ ୧୯୭୮ ମଧ୍ୟରେ 'ସଲାମ ଘେନ', 'ବନବାସୀର ଠିକଣା', 'ମତର ବେପାର', 'ସତେ କି ଏହା ଜୀବନ', 'ଗାନା ସମ୍ବଲପୁରି' ଭଳି ପଚିଶ ପଇସିଆ ଓ ଟଙ୍କିକିଆ ମୂଲ୍ୟର ପ୍ରାୟ ୧୬ ପୃଷ୍ଠିଆ ଚଟି ବହି ପ୍ରକାଶ କରିଥିଲେ । ପରେ ପ୍ରାୟ ସବୁଗୁଡ଼ିକ ତାଙ୍କ କବିତା ବହିରେ ସଂକଳିତ ହୋଇଛି ।

ଅନୁବାଦକଭାବରେ ଅମୃତ ରାୟଙ୍କ 'ପ୍ରେମଚନ୍ଦ' (ଇଂରାଜିରୁ ଓଡ଼ିଆ), ଦିନନାଥ ପାଠୀଙ୍କ କବିତା ସଂକଳନ 'ଅବନ୍ତୀ' (ଓଡ଼ିଆରୁ ଇଂରାଜି) ଓ ମନୋରମା ବିଶ୍ୱାଳ ମହାପାତ୍ରଙ୍କ କେତୋଟି ଓଡ଼ିଆ କବିତାର ଇଂରାଜି ଅନୁବାଦ 'ଓନ୍‌ଲି ଏ ପୋଏଟ୍ କ୍ୟାନ୍ ଡ୍ରିମ୍' ନାମରେ ପ୍ରକାଶପାଇଛି ।

ସ୍ତମ୍ଭକାର ଭାବରେ ସେ ଲୋକପ୍ରିୟ ହୋଇଛନ୍ତି 'ସମ୍ବାଦ'ର ଦୈନିକ 'ଭାଷା ଭାବନା' ଓ ସାମୟିକ ସ୍ତମ୍ଭ 'ଶବ୍ଦାଞ୍ଜଳି' ପାଇଁ । ୨୦୦୭ ମସିହାରୁ 'ସମ୍ବାଦ'ର ଆଠଟି ସଂସ୍କରଣରେ ପ୍ରକାଶ ପାଉଥିବା 'ଶବ୍ଦାଞ୍ଜଳି' ସ୍ତମ୍ଭର କିଛି ଲେଖା ଏକାଠି ହୋଇ ସେହି ନାମରେ ଏକ ବହି ପ୍ରକାଶପାଇଛି ୨୦୧୩ ମସିହାରେ ।

'ସମ୍ବାଦ'ର ସମ୍ବଲପୁର ସଂସ୍କରଣରେ ତାଙ୍କର ସାପ୍ତାହିକ 'ଭାଷାଚର୍ଚ୍ଚା' ସ୍ତମ୍ଭ ନିୟମିତ ପ୍ରକାଶପାଉଛି । ଛାତ୍ରାବସ୍ଥାରେ ସାପ୍ତାହିକ 'ପଂଚମୁଖୀ'ରେ 'ପଛକୁ ଚାହିଁଲି ଫେରି' ଓ ପରେ ଇଂରାଜି ଦୈନିକ 'ସନ୍ ଟାଇମସ୍'ରେ 'ସ୍ମଲ୍ ଟକ୍' ନାମକ ସାପ୍ତାହିକ ସ୍ତମ୍ଭରେ ଲେଖିଛନ୍ତି । ଏହି ସ୍ତମ୍ଭଗୁଡ଼ିକରେ ସେ ତାଙ୍କର ମୌଳିକ ଭାବନାର ପରିଚୟ ଦେଇଛନ୍ତି ।

ଛାତ୍ରାବସ୍ଥାରେ ସେ ପତ୍ରିକା ସଂପାଦନା କ୍ଷେତ୍ରରେ ଆଗ୍ରହ ଦେଖାଇଛନ୍ତି । ସମ୍ବଲପୁରରୁ ପ୍ରକାଶିତ ସାପ୍ତାହିକ 'ପଂଚମୁଖୀ'ରେ ସୌଜନ୍ୟ ସଂପାଦକଭାବେ ପ୍ରାୟ ୧୯୬୫ରୁ ୧୯୬୯ ଯାଏ କାର୍ଯ୍ୟ କରିଛନ୍ତି । ପ୍ରାୟ ୧୯୭୦ରେ ଅନ୍ତର୍ଦେଶୀୟ ପତ୍ରରେ 'ପତ୍ର ପତ୍ରିକା' ପତ୍ରିକା ନାମରେ ଛୋଟ ଛୋଟ କବିତାଗୁଡ଼ିକୁ ସଂପାଦିତ କରି ମୁଦ୍ରିତ ଆକାରରେ ଓଡ଼ିଶାର ବିଭିନ୍ନ ଅଂଚଳକୁ ପଠାଉଥିଲେ ସେ । ସେହିପରି ୨୦୦୪ରେ 'ସମ୍ବାଦ' ତରଫରୁ ପ୍ରକାଶିତ ମାସିକ 'ସାରାଂଶ'ର ନାମ ଉଲ୍ଲେଖଯୋଗ୍ୟ । ଟାବ୍‌ଲ୍‌ଏଡ (Tabloid) ସାଇଜର ଏହି ପତ୍ରିକାଟିରେ ମାସିକ ଖବରଗୁଡ଼ିକର ସାରାଂଶ, ବ୍ୟକ୍ତିତ୍ୱ ବିକାଶ, ବିଭିନ୍ନ ସଚେତନତା ଓ ସକାରାତ୍ମକ ଲେଖା ସହିତ ଅନେକ ଜ୍ଞାନ ବିଜ୍ଞାନମୂଳକ ସୂଚନା ସ୍ଥାନ ପାଉଥିଲା । ଏପରିକି ପତ୍ରିକାଟିରେ ଛୋଟମୋଟ ଫାଙ୍କା ସ୍ଥାନ ନ ରହି ଲେଖାଗୁଡ଼ିକରେ ପୂର୍ଣ୍ଣ ରହୁଥିଲା । ପତ୍ରିକାର ଅକ୍ଟୋବର, ନଭେମ୍ବର ଓ ଡିସେମ୍ବର ଏହି ତିନିଟି ସଂଖ୍ୟା ପ୍ରକାଶ ପରେ ଏବେ ବନ୍ଦ ରହିଛି । ପ୍ରକୃତରେ ଓଡ଼ିଆ ଭାଷାରେ ଏପରି ଏକ ପତ୍ରିକା ବା ଦୈନିକ ସଂବାଦପତ୍ରର ଆବଶ୍ୟକତା ରହିଛି । ବହି ସଂପାଦନା କ୍ଷେତ୍ରରେ ୨୦୧୧ ମସିହାରେ ଶଶାଙ୍କ ଶେଖର ପଣ୍ଡାଙ୍କ ସହିତ ପଶ୍ଚିମ ଓଡିଶା ବିକାଶ ପରିଷଦ ତରଫରୁ ପ୍ରକାଶିତ 'ପଶ୍ଚିମ ଓଡିଶାର ସଂସ୍କୃତି ଓ ପରଂପରା' ଉଲ୍ଲେଖଯୋଗ୍ୟ ।

ସାହିତ୍ୟ ସଂଗଠନ କ୍ଷେତ୍ରରେ ସେ ସଂବଲପୁରସ୍ଥ ଗଙ୍ଗାଧର ମେହେର କଲେଜର 'ଗଙ୍ଗାଧର ସାହିତ୍ୟ ସାଧନା ପୀଠ' (୧୯୬୬) 'ଉଦୟନ ସାହିତ୍ୟ ଆଳାପନୀ' (୧୯୬୫-୧୯୬୮) ଓ 'ଓଡ଼ିଆ ଯୁବ ଲେଖକ ସମ୍ମେଳନ'ରେ (୧୯୬୮ - ୧୯୬୯) ସଂପାଦକଭାବେ କାର୍ଯ୍ୟ କରିଛନ୍ତି ।

ଜଣେ ଚିତ୍ରକରଭାବରେ ତାଙ୍କର ବି ପରିଚୟ ରହିଛି । କିଛି ପୁସ୍ତକର ମଲାଟ ଚିତ୍ର ଆଙ୍କିଛନ୍ତି ସେ । ଓଡ଼ିଶା ଲଳିତ କଳା ଏକାଡେମୀ ସଂଗ୍ରହରେ ସ୍ଥାନିତ ହୋଇଛି

ତାଙ୍କର ଜଗନ୍ନାଥଙ୍କ କାଳସର୍ପ କୋଲାଜ୍ । ରାଷ୍ଟ୍ରୀୟ କଳା ମେଳା, ନୂଆଦିଲ୍ଲୀ ଓ ଏକାଡେମୀ ଅଫ୍ ଫାଇନ୍ ଆଟସ୍, କଲିକତାରେ ଆୟୋଜିତ ଚିତ୍ର ପ୍ରଦର୍ଶନୀରେ ଜଣେ ଚିତ୍ରକରଭାବେ ଅଂଶଗ୍ରହଣ କରିଛନ୍ତି ଶ୍ରୀ ତ୍ରିପାଠୀ । ପୁଣି ଓଡ଼ିଶା ପର୍ଯ୍ୟଟନ ନିଗମ ଆନୁକୂଲ୍ୟରେ ସ୍ୱ-ଅଙ୍କିତ ଚିତ୍ରାବଳି 'ଚିତ୍ର ବାରମାସୀ'ର ଏକକ ପ୍ରଦର୍ଶନ କରିଛନ୍ତି ଏବଂ ବିଭିନ୍ନ ଚିତ୍ର ପ୍ରଦର୍ଶନୀ ସମୟରେ ସେ ବି ଓଡ଼ିଆ ଚିତ୍ରକରମାନଙ୍କର ଜୀବନାଲେଖ୍ୟ ସଂବଳିତ ସୂଚନାପତ୍ର ଇଂରାଜି ଭାଷାରେ ଲେଖିଛନ୍ତି । ତାଙ୍କର ସବୁ ଚିତ୍ର ମୁଖ୍ୟତଃ ଜଗନ୍ନାଥଙ୍କୁ କେନ୍ଦ୍ରକରି ହୋଇଥାଏ । 'ସମ୍ବାଦ' ନୂଆ ନୂଆ ବାହାରିବାବେଳେ ସେଥିରେ ସେ 'ସାକ୍ଷୀ ଜଗନ୍ନାଥ' ନାମରେ ତାଙ୍କର ଦୈନିକ ସାମାଜିକ କାର୍ଟୁନ ପ୍ରକାଶ କରୁଥିଲେ । ଜଗନ୍ନାଥଙ୍କ ଚିତ୍ରଟିଏ ଥାଇ କୌଣସି ଏକ ପ୍ରସଙ୍ଗରେ ସେ ତାଙ୍କର ମତ ପ୍ରକାଶ କରୁଥିଲେ ।

ତାଙ୍କର ଗପ, ପ୍ରବନ୍ଧାଦି ଗଦ୍ୟ ଲେଖାର ଭାଷା, ଭାବ ବେଶ୍ ମନଛୁଆଁ । ପ୍ରବନ୍ଧଗଡ଼ିକରେ ତାଙ୍କର ଅନ୍ତର୍ଦୃଷ୍ଟିମୂଳକ ବକ୍ତବ୍ୟ ସହିତ ତାଙ୍କର ଜୀବନ ପ୍ରାୟ ସମତାଳରେ ଚାଲୁଥିବାର ମନେହୁଏ । ତାଙ୍କର 'ଗାଁ-ଉପରେ ରଚନା' ଗପ ଏକ ମୌଳିକ ସୃଷ୍ଟି । ଏଥିରେ ଗାଁର ଜୀବନଶୈଳୀକୁ ଲେଖକ କଥିତ ଭାଷାରେ ଓ ଜୀବନ୍ତଭାବରେ ବ୍ୟକ୍ତ  କରିଛନ୍ତି । ଗାଁ ସଂପର୍କିତ ଲିଖିତ ତାଙ୍କର ଏହି ଗପଟି ମାନ ଦୃଷ୍ଟିରୁ ନିଶ୍ଚିତଭାବେ ଉଚ୍ଚ ଶ୍ରେଣୀର ଏଥିରେ ସଂଦେହ ନାହିଁ ।

କବିତା ପାଇଁ ୧୯୬୫ରେ ଓ ଗପ ପାଇଁ ୧୯୬୭ରେ ସେ 'ପ୍ରଜାତନ୍ତ୍ର' ଅନୁଷ୍ଠାନର 'ବିଷୁବ ମିଳନ ଉତ୍ସବ'ରେ ସମ୍ମାନୀତ ହୋଇଛନ୍ତି । ୧୯୭୭ରେ 'ନିଜ ସିଂହାସନ' ଗପ ବହି ପାଇଁ ମିଳିଛି ତାଙ୍କୁ 'ଓଡ଼ିଶା ସାହିତ୍ୟ ଏକାଡେମୀ' ପୁରସ୍କାର । ସମୟାନୁବର୍ତ୍ତୀ, ମେଳାପୀ ଶ୍ରୀ ତ୍ରିପାଠୀ ତାଙ୍କର ଦୁଇ ପୁଅଙ୍କ ନାମକରଣରେ ବି କବିପ୍ରାଣର ପରିଚୟ ଦେଇଛନ୍ତି । ବଡ଼ ପୁଅଙ୍କ ନାମ-ପ୍ରଥମ ପୁଲକ, ସାନ- ରଂଗିନ ପଲ୍ଲବ ।

ସେ ୧୯୬୩ରୁ ଏ ଯାଏ ନିରନ୍ତରଭାବେ ରେଡିଓରେ ଜଣେ ଗୀତିକାର ଓ କଥକଭାବରେ ମଧ୍ୟ ସକ୍ରିୟ ରହିଛନ୍ତି । ❑

# ତ୍ରିପାଠୀଙ୍କ ଭାଷା ଖେଳ

ପୂର୍ବ କେତୋଟି ପୃଷ୍ଠାରେ ତ୍ରିପାଠୀଙ୍କ ଜୀବନ ଓ ସାହିତ୍ୟ ସଂପର୍କିତ କିଛି ସୂଚନା ରହିଛି । ଓଡ଼ିଆ ସାହିତ୍ୟର ବିଭିନ୍ନ ବିଭାଗକୁ ଲେଖାରେ ସମୃଦ୍ଧ କରିଥିବା ଡକ୍ଟର୍ ପ୍ରଫୁଲ୍ଲ କୁମାର ତ୍ରିପାଠୀ ଭାଷା ଚର୍ଚ୍ଚାରେ ବି ଉଲ୍ଲେଖନୀୟ କାର୍ଯ୍ୟ କରିଛନ୍ତି । ତେଣୁ ଏଠାରେ କେବଳ ତାଙ୍କର ଭାଷା ଚର୍ଚ୍ଚା ସଂପର୍କିତ ପରିଚୟ ଦିଆଯାଉଛି ।

ସେ ବଡ଼ ଆନନ୍ଦ ଓ ଆଗ୍ରହର ସହ ଭାଷାକୁ ଚର୍ଚ୍ଚା କରିଛନ୍ତି । ଭାଷା, ଶବ୍ଦ ସହିତ ପିଲାଙ୍କ ପରି ଖେଳିଛନ୍ତି ଆଉ ସେହି ଖେଳ ସହ ପାଠକଙ୍କୁ ବି ପରିଚୟ କରେଇଛନ୍ତି । ସୃଜନ ସାହିତ୍ୟରୁ ପ୍ରାୟ ଦୂରେଇ ରହି ସେ ଚଳିତ ସମୟରେ ଭାଷା-ଭାବନା, ଚର୍ଚ୍ଚା ଓ ପ୍ରକାଶନରେ ଓଡ଼ିଶାରେ ସର୍ବାଧିକ ସକ୍ରିୟତା ପ୍ରଦର୍ଶନ କରି ଆସୁଛନ୍ତି । ଲିପି ସଂସ୍କାର କ୍ଷେତ୍ରରେ ବୁଝିଥିବା ତତ୍ତ୍ୱକୁ ସର୍ବଦା ନିଜ ଲେଖାରେ ବ୍ୟବହାର କରିବାରେ ସେ ବହୁ ସଚେତନ । ସେସବୁର ବ୍ୟାବହାର ପାଇଁ ତାଙ୍କର ତାତ୍ତ୍ୱିକ ଯୁକ୍ତିଗୁଡ଼ିକ ବଡ଼ ଅକାଟ୍ୟ ଆଉ ଆନନ୍ଦକର ବି । ତାଙ୍କର ପ୍ରଥମ ଭାଷାମୂଳକ ଲେଖା ୧୯୭୩ ମସିହା ମାର୍ଚ୍ଚ ମାସର 'ନବପତ୍ର'ରେ 'ନିଅ ନିଅ ଶବ୍ଦ ନିଅ' ନାମରେ ପ୍ରକାଶ ପାଇଥିଲା । ପରେ ପରେ ଓଡ଼ିଶା ସାହିତ୍ୟ ଏକାଡେମୀର ଜର୍ଣ୍ଣାଲ 'କୋଣାର୍କ'ର ଚାରିଟି ସଂଖ୍ୟାରେ 'ସମଲପୁରୀ ଶବ୍ଦ-ସୂଚୀ' ନାମରେ ବର୍ଣ୍ଣକ୍ରମରେ କିଛି ସମଲପୁରି ଶବ୍ଦର ତାଲିକା ପ୍ରକାଶ ପାଇଥିଲା । ପରେ ସେହି ୫୦ ପୃଷ୍ଠାର ଲେଖାଗୁଡ଼ିକ ସେହି ନାମରେ ଏକାଠି ବନ୍ଧେଇ ହୋଇ ଅଧିକ ସମଲପୁରି ଶବ୍ଦ ସଂଗ୍ରହ ଲକ୍ଷ୍ୟରେ ୧୯୮୩ ମସିହାରେ ସମଲପୁରି ଭାଷାଭାଷୀ ଅଞ୍ଚଳରେ ପ୍ରାୟ ୨୦୦ କପି ମାଗଣାରେ ବଣ୍ଟା ଯାଇଥିଲା (ଦେଖନ୍ତୁ : 'ସମଲପୁରି - ଓଡ଼ିଆ ଶବ୍ଦକୋଷ' ୧୯୮୭, ପୃ.୨୬) । ଏହି ଶବ୍ଦ ସଂଗ୍ରହ ଅଭିଯାନରୁ ପରେ ଡକ୍ଟର୍ ତ୍ରିପାଠୀଙ୍କର 'ସମଲପୁରି-ଓଡ଼ିଆ ଶବ୍ଦକୋଷ' ନାମକ ଏକ ଅଭିଧାନ ପ୍ରକାଶ ପାଇଛି । ଏହାକୁ ମିଶାଇ ସେ ଛୋଟ ବଡ଼ ହୋଇ ୨୬ଟି ଭାଷାତାତ୍ତ୍ୱିକ ବା ଭାଷାମୂଳକ ବହି ଲେଖିଛନ୍ତି

ବା ସଂକଳନ କରିଛନ୍ତି ଭାରି ପ୍ରେମ୍‌ରେ । ପାଠକଙ୍କପାଇଁ ସେଗୁଡ଼ିକର ସୂଚନା ଏଠାରେ ଦିଆଗଲା ।

୧. **ସମଲ୍‌ପୁରି-ଓଡ଼ିଆ ଶବ୍ଦକୋଶ,**୧୯୮୭ ଓ ୨୦୦୧-ପୃଷ୍ଠା ସଂଖ୍ୟା ୪୩୨, ଓଡ଼ିଶା ସାହିତ୍ୟ ଏକାଡେମୀ, ଭୁବନେଶ୍ୱର ।

ଯେତେବେଳେ ସମଲ୍‌ପୁରି ଭାଷାରେ ମୋଟେ ୧୦୦ ଖଣ୍ଡ ବହି ପ୍ରକାଶ ପାଇ ନ ଥିଲା, ସେତେବେଳେ ଏହି ଭାଷାର ଶବ୍ଦକୋଷ ପ୍ରକାଶିତ ହେବା ଏକ ପ୍ରଶଂସନୀୟ କାର୍ଯ୍ୟ । ପାଞ୍ଚଟି ବିଭାଗରେ ବିଭକ୍ତ ଏହି ଶବ୍ଦକୋଷରେ ପ୍ରାୟ ୧୨ ହଜାର ସମଲ୍‌ପୁରି ଶବ୍ଦର ବ୍ୟାକରଣିକ ବିଭାଗୀକରଣ ସହିତ ସରଳ ଓଡ଼ିଆ ଅର୍ଥ ଓ ସମଲ୍‌ପୁରି ପ୍ରତିଶବ୍ଦମାନ ରହିଛି । ଦ୍ୱିତୀୟ ବିଭାଗରେ ରହିଛି ଅନ୍ୟ ୪୦ଟି ସଂପର୍କିତ ଭାଷାର ସମଗୋତ୍ରୀୟ ଶବ୍ଦାବଳି । ସେହିପରି ତୃତୀୟ ବିଭାଗରେ ସ୍ଥାନପାଇଛି ସମଲ୍‌ପୁରି ପ୍ରବଚନ । ଚତୁର୍ଥ ବିଭାଗରେ 'ଶବ୍ଦମାଳା' ନାମରେ ଅବ୍ୟୟ, କ୍ରିୟାମୂଳ ସହିତ ବିଭିନ୍ନ ବିଶେଷ୍ୟ ପଦବାଚକ ସମଜାତୀୟ ଶବ୍ଦାବଳି ରହିଛି । ଆଉ ପଞ୍ଚମ ବିଭାଗରେ ଅଛି- ନାମ ଓ ଶବ୍ଦ ସାରଣି । ଏଥିରେ ମାସ, ତିଥି, ବାରଗୁଡ଼ିକର ନାମ, ସଂଖ୍ୟାସୂଚକ ଶବ୍ଦସାରଣି ଓ ବ୍ୟାକରଣର ବିଭିନ୍ନ ଦିଗ ସଂପର୍କିତ ଆଲୋଚନା ହୋଇଛି ।

୨. **ଦେଖ ପଢ଼ ଲେଖ**, ୧୯୯୪, ପୃ.୩୬, ଗାୟତ୍ରୀ, ଭୁବନେଶ୍ୱର ।

ଏହା ଏକ ସଚିତ୍ର ଲିପି ଶିକ୍ଷାମୂଳକ ପୁସ୍ତିକା । ଏଥିରେ 'ଠ'ରୁ ବର୍ଣ୍ଣ ଶିକ୍ଷା ଆରମ୍ଭ କଥା କୁହାଯାଇଛି । ପ୍ରଥମେ ଠ ଚ ଟ ଗ ର ଛ ଶିଖିବା ପରେ ଆ-କାର, ଇ-କାର ଆଦି ଚିହ୍ନ ଲଗାଇ ଶିଖିଲେ ବର୍ଣ୍ଣ ଶିକ୍ଷା ସହଜ ହେବ ବୋଲି ଦର୍ଶାଯାଇଛି । ଏ ବହିଟିରେ କେବଳ ମାତ୍ରା, ଫଳା ଶିଖିବା ବିଷୟ ସ୍ଥାନ ପାଇଛି । ପୂର୍ବ ପ୍ରଚଳିତ ଧାରାରେ ଶୁଆ ପରି ଘୋଷିବା ଅପେକ୍ଷା ମଣିଷ ପରି ବୁଝିଲେ ବର୍ଣ୍ଣ ଶିକ୍ଷା ସରଳ ହୋଇଥାଏ ବୋଲି ସୂଚିତ ଅଛି ।

୩. **ଶବ୍ଦବୋଧ,** ୧୯୯୪, ପୃ.୧୪୪, ଗାୟତ୍ରୀ, ଭୁବନେଶ୍ୱର ।

ବହିଟି ମୁଖ୍ୟତଃ ଶବ୍ଦଗଠନ ଉପରେ ଆଧାରିତ । ଶବ୍ଦର ପୂର୍ବରେ ଓ ପରେ ଉପସର୍ଗ, ପ୍ରତ୍ୟୟ ଆଦି ଯୋଗରେ ଗଠିତ ହେଉଥିବା ଉତ୍ପାଦକ (productive) ଶବ୍ଦଗୁଡ଼ିକ ସଂପର୍କିତ ଆଲୋଚନା କରାଯାଇଛି । ଏଥିରେ ପାରଂପରିକ ସୂତ୍ରଗୁଡ଼ିକର ବ୍ୟାଖ୍ୟାମୂଳକ ଆଲୋଚନା ପରିବର୍ତ୍ତେ ତୁଳନାତ୍ମକ ଉଦାହରଣ ଓ ପର୍ଯ୍ୟାୟକ୍ରମିକ ତାଲିକା

ଦ୍ୱାରା ସୂତ୍ରଗୁଡ଼ିକ ପରିସ୍ଫୁଟିତ ହୋଇଛି । ପୁଣି ଧ୍ୱନି ଭେଦ, ସମୋଚ୍ଚାରିତ ଶବ୍ଦାବଳି, ବନାନ, ସନ୍ଧି, ପଦ ପରିବର୍ତ୍ତନ, ଭୁଲ୍ ଠିକ୍ ଓ ଉଚ୍ଚାରଣ ପ୍ରସଙ୍ଗ ସ୍ଥାନ ପାଇଛି ।

୪. **ପଢ଼ ଲେଖ ଶିଖ**, ୧୯୯୪, ପୃ.୪୮, ଗାୟତ୍ରୀ, ଭୁବନେଶ୍ୱର ।

'ଦେଖ ପଢ଼ ଲେଖ' ପରି ଏହା ମଧ୍ୟ ଏକ ସଚିତ୍ର ଲିପି ଶିକ୍ଷାମୂଳକ ବହି/ପୁସ୍ତିକା । ସେଥିରେ କେବଳ ମାତ୍ରା, ଫଳା ଶିଖିବା କଥା ଥିବାବେଳେ ଏଥିରେ ଯୁକ୍ତ ବର୍ଣ୍ଣ ଶିଖିବା କଥା ସ୍ଥାନ ପାଇଛି ।

୫. **ଶବ୍ଦନିଧି**, ୧୯୯୫ ଡିସେମ୍ବର, ପୃ.୧୯୨, ଗ୍ରନ୍ଥମନ୍ଦିର, କଟକ ।

ଏହା ଏକ ସମାର୍ଥ କୋଶ ବା Thesaurus । ଓଡ଼ିଆ ଭାଷାରେ ପ୍ରଚଳିତ ୨୦୭୩ଟି ଶବ୍ଦର ପ୍ରାୟ ସମାର୍ଥକ ଶବ୍ଦଗୁଡ଼ିକ ବର୍ଣ୍ଣକ୍ରମରେ ତାଲିକାବଦ୍ଧ ହୋଇଛି । ସମପର୍ଯ୍ୟାୟର ସରଳତମ ଶବ୍ଦକୁ ମନେ ପକେଇ ତାଲିକାରେ ଆଖି ପକେଇଲେ ନିର୍ଦ୍ଦିଷ୍ଟ ଶବ୍ଦଟି ମିଳିଯାଇପାରେ । ବହିର ଆଗ ଭାଗରେ ଶବ୍ଦର ବିଷୟାନୁକ୍ରମିକ (ଯଥା- ବିଶ୍ୱ, ପ୍ରକୃତି, ଇନ୍ଦ୍ରିୟଭାବ ଆଦି ୩୦ଟି ବିଭାଗ) ଓ ପଛ ଭାଗରେ ବର୍ଣ୍ଣାନୁକ୍ରମିକ ସୂଚି ରହିଛି ।

୬. **ଓଡ଼ିଆ ବନାନ ଅଭିଧାନ**, ୧୯୯୭, ପୃ. ୨୯୨, ଗାୟତ୍ରୀ, ଭୁବନେଶ୍ୱର ।

ଯେଉଁ ଶବ୍ଦର ବନାନ ଲେଖିବାରେ ସାମାନ୍ୟ ଦ୍ୱନ୍ଦ୍ୱ ଉପୁଜେ, ସେଇଭଳି ବହୁ ଶବ୍ଦର ବନାନ ଏଥିରେ ରହିଛି । ଆବଶ୍ୟକସ୍ଥଳେ କିଛି ଶବ୍ଦର ଅର୍ଥ ମଧ୍ୟ ଦିଆଯାଇଛି ।

୭. **ଶୁଦ୍ଧ ଓଡ଼ିଆ ଲିଖନ ଅଭ୍ୟାସ ପୁସ୍ତିକା**, ୧୯୯୭, ପୃ.୩୨, ସମ୍ବାଦ, ଭୁବନେଶ୍ୱର ।

୧୯୯୭ ମାର୍ଚ୍ଚ ୨ ତାରିଖରେ ଆରମ୍ଭ ହୋଇଥିବା ରାଜ୍ୟସ୍ତରୀୟ ନବମ, ଦଶମ ଶ୍ରେଣୀ ପିଲାମାନଙ୍କ 'ଶୁଦ୍ଧ ଓଡ଼ିଆ ଲିଖନ ପରୀକ୍ଷା' ନିମନ୍ତେ ଏକ ଅଭ୍ୟାସ ପୁସ୍ତିକା । ଏହି ପୁସ୍ତିକାଟି ପିଲାମାନଙ୍କର ଶବ୍ଦ ଜ୍ଞାନ ବୃଦ୍ଧିରେ ସହାୟକ ହେବା ଲକ୍ଷ୍ୟରେ ପ୍ରସ୍ତୁତ କରାଯାଇଛି । ପରେ ନୂଆ ନୂଆ ପ୍ରସଙ୍ଗ ଲେଖାଯାଇ ଏହାର କେତୋଟି ସଂସ୍କରଣ ପ୍ରକାଶପାଇଛି ।

୮. **ସମ୍ବାଦ ବନାନ ସାଥୀ**, (ବହିରେ ପ୍ରକାଶନ ମସିହା ସୂଚିତ ହୋଇନାହିଁ), ପୃ.୮୦, ସମ୍ବାଦ, ଭୁବନେଶ୍ୱର ।

ପକେଟ୍ ସାଇଜ୍‌ର ସାଥୀଟି 'ସମ୍ବାଦ' ଖବରକାଗଜର ସାଂବାଦିକ ବା କର୍ମକର୍ତ୍ତାମାନଙ୍କ ବ୍ୟବହାର ପାଇଁ ପ୍ରସ୍ତୁତ । 'ସମ୍ବାଦ'ର ଆଠଟି ସଂସ୍କରଣର ଟିକିନିଖି ଭାଷା ଅନୁଶୀଳନରୁ ଜାତ ଶବ୍ଦ ତାଲିକା ଏଥିରେ ସ୍ଥାନ ପାଇଛି । ଏଥିରେ ବନାନ ସରଳୀକରଣ ବା ସମରୂପତାକୁ ଗୁରୁତ୍ୱ ଦିଆଯିବା ସହିତ ବିଦେଶୀ ଶବ୍ଦଗୁଡ଼ିକର ଓଡ଼ିଆ ବନାନକୁ ନିୟମବଦ୍ଧ କରିଛନ୍ତି ଲେଖକ । ବହିଟି ଦୁଇ ଭାଗରେ ବିଭକ୍ତ । ପ୍ରଥମ ଭାଗରେ ବନାନ ସଂପର୍କିତ ଧାରଣା ରହିଛି । ଦ୍ୱିତୀୟ ଭାଗରେ 'ସଂକ୍ଷିପ୍ତ ବନାନ ଅଭିଧାନ' ନାମରେ ବର୍ଣ୍ଣମାଳା କ୍ରମରେ କିଛି ଶବ୍ଦର ବନାନ ଦିଆଯାଇଛି ।

୯. **ସମ୍ବାଦ ରଚନା ବିଧି**, ୧୯୯୮, ପୃ.୧୪୪, ଇଷ୍ଟର୍ଣ୍ଣ ମିଡ଼ିଆ ଲିମିଟେଡ୍, ଭୁବନେଶ୍ୱର ।

ବିଶେଷ କରି ସମ୍ବାଦପତ୍ରର ଭାଷା ପରିବେଷଣ ଶୈଳୀରେ ଏକ ନିୟାମକ ତିଆରି କରିବା ଲକ୍ଷ୍ୟରେ ଏ ବହିଟି ରଚିତ । ଛାପା ପାଠରେ ବିଭିନ୍ନ ପ୍ରକାର ବନାନ, ରୀତି ବିରୁଦ୍ଧ ବାକ୍ୟାବଳି ଓ ଅନୁପଯୁକ୍ତ ଶବ୍ଦ ସଂଯୋଜନା ଯୋଗୁଁ ଛାପା ପାଠର ପ୍ରଭାବ କ୍ଷେତ୍ର କ୍ରମେ ସଂକୁଚିତ ହେବାର ଲକ୍ଷ୍ୟ କରିଛନ୍ତି ଲେଖକ । ଏଥିରେ ଓଡ଼ିଆ ଲିପ୍ୟନ୍ତରଣ, ଭାଷାରେ ଆଞ୍ଚଳିକ ପୁଟ, ବାହୁଲ୍ୟ ବର୍ଜନ, ଉଦ୍ଧୃତି ଚିହ୍ନ, ଅସ୍ପଷ୍ଟ ବକ୍ତବ୍ୟ ଆଦି ପ୍ରସଙ୍ଗଗୁଡ଼ିକର ଗୁରୁତ୍ୱାରୋପ କରାଯାଇଛି । ଏହା ମୁଖ୍ୟତଃ 'ସମ୍ବାଦ' ଖବରକାଗଜର ସାଂବାଦିକମାନଙ୍କ ପାଇଁ ଲେଖାଯାଇଥିବା ବେଳେ ଅନ୍ୟମାନେ ବ୍ୟବହାର କରୁଥିବାର ଜଣାଯାଏ ।

୧୦. **ସମଲପୁରି କୋସ୍‌ଲି ବ୍ୟାକରଣ**, ୨୦୦୧, ପୃ.୨୦୮, ସମ୍ବଲପୁର ବିଶ୍ୱବିଦ୍ୟାଳୟ, ସମ୍ବଲପୁର ।

ନୀଳମାଧବ ପାଣିଗ୍ରାହୀ ଓ ପ୍ରଫୁଲ୍ଲ କୁମାର ତ୍ରିପାଠୀ ଦୁହେଁ ଏ ବହିଟି ଲେଖିଛନ୍ତି । କଥିତ ସମଲପୁରି ଭାଷା ଆଧାରରେ ଏ ବହିଟି ଲିଖିତ । ଏହି ଭାଷାର ଶେଷ ଅ-କାରାନ୍ତ ବର୍ଣ୍ଣ ହଳନ୍ତ ଉଚ୍ଚାରଣ ହୋଇଥାଏ; କିନ୍ତୁ ଏ ବହିରେ ଅଧିକାଂଶ ସଂସ୍କୃତ ତତ୍‌ସମ ଶବ୍ଦର ଶେଷ ଅ-କାରାନ୍ତ ବର୍ଣ୍ଣରେ ହଳନ୍ତ ଚିହ୍ନ ଦିଆଯାଇ ନାହିଁ । ଯଥା - ବ୍ୟାକରଣ, ବ୍ୟଞ୍ଜନ, ସ୍ୱର ଇତ୍ୟାଦି । ଏହି ସୂଚନା 'ଇ ବହି' ନାମିତ ଉପକ୍ରମଣିକାରେ ରହିଛି । ଏଥିରେ ଲେଖକ ଦ୍ୱୟ ବ୍ୟାକରଣର ବିଭିନ୍ନ ପ୍ରସଙ୍ଗକୁ ସୂତ୍ରାୟିତ ବା ଆଲୋଚିତ କରିଛନ୍ତି । 'ପରିଶିଷ୍ଟ'ରେ ଶ୍ରୀ ସତ୍ୟନାରାୟଣ ବହିଦାରଙ୍କ 'ସମ୍ବଲପୁରୀ ଭାଷାର ଶବ୍ଦ-ବିଭବ ବା ସଂକ୍ଷିପ୍ତ ସମ୍ବଲପୁରୀ ବ୍ୟାକରଣ ଓ ରଚନା' ପୁନର୍ମୁଦ୍ରିତ ହୋଇଛି ।

୧୧. **ଇଂଲିଶ୍ ଉଚ୍ଚାରଣ**, ୨୦୦୬, ପୃ.୭୨, ବିଜୟିନୀ ପବ୍ଲିକେଶନ୍ସ, କଟକ ।

ଓଡ଼ିଆ ଭାଷାଭାଷୀମାନେ ନିର୍ଭୁଲ୍ ଭାବରେ ଇଂଲିଶ୍ ଉଚ୍ଚାରଣ କରିବା ଲକ୍ଷ୍ୟରେ ବହିଟି ରଚିତ । ଅଧ୍ୟାପକ ଗୋଲୋକ ବିହାରୀ ଧଳଙ୍କ 'ଇଂରେଜି ଉଚ୍ଚାରଣ ଶିକ୍ଷା'(୧୯୬୩) ପରେ ଓଡ଼ିଆ ପାଠକଙ୍କପାଇଁ ବୋଧହୁଏ ଏହା ଦ୍ୱିତୀୟ ବହି । ଏଥିରେ ଉଚ୍ଚାରଣ ଅଭ୍ୟାସ ପାଇଁ କିଛି ଶବ୍ଦ ରହିଛି । କେଉଁ ଓଡ଼ିଆ ଅକ୍ଷର କେଉଁ ଇଂଲିଶ୍ ଶବ୍ଦ ଉଚ୍ଚାରଣ ପାଇଁ ବ୍ୟବହାର ହୁଏ ତାହାର ସୂଚନା ରହିଛି । ଜଟିଳ ବନାନ ଯଥା-Maestro, Malaise ଆଦି ଶବ୍ଦଗୁଡ଼ିକର ଉଚ୍ଚାରଣ ସହିତ ବହୁବଚନ ସୂଚକ s, es ଥିଲେ ତାର ଉଚ୍ଚାରଣ କିପରି କରାଯିବ ତାହା ଉଲ୍ଲେଖ ରହିଛି । ସେହିପରି ଇଂରାଜି ଶବ୍ଦରେ ଥିବା ଅନୁଚ୍ଚାରିତ ବର୍ଣ୍ଣ B, D, G, H, I, N, T, W ଆଦିର ଶବ୍ଦଗତ ଉଦାହରଣ ରହିଛି ।

୧୨. **ଭାଷା ଭାବନା (ପ୍ରଥମଭାଗ)**, ୨୦୦୬ ମାର୍ଚ୍ଚ, ପୃ.୧୯୨, ଅପୂର୍ବା, ଭୁବନେଶ୍ୱର ।

ସ୍ଥାନିତ ୪୦ଟି ପ୍ରସଙ୍ଗ ୧୯୮୫ରୁ ୨୦୦୫ ମଧ୍ୟରେ ମୁଖ୍ୟତଃ ଆଲୋଚନାଚକ୍ର, କର୍ମଶାଳାରେ ଧ୍ୱନିତ ଓ ପତ୍ର-ପତ୍ରିକାଗୁଡ଼ିକରେ ମୁଦ୍ରିତର ସଂକଳନ । 'ଓଡ଼ିଆ ଶିଶୁର ଶିକ୍ଷା ଭାଷା', 'କଥିତ ଭାଷା ଓ ଓଡ଼ିଆ ଅଭିଧାନ', 'ସାହିତ୍ୟ ଓ ସାଂବାଦିକତାର ଭାଷା' 'ହାତଲେଖା ଓ ଯନ୍ତ୍ରଲେଖା', 'ବନାନ ସାଧକ' ଆଦି ପ୍ରସଙ୍ଗରେ ପ୍ରବନ୍ଧ ସ୍ଥାନିତ ହୋଇଛି ।

୧୩. **ଭାଷା ଭାବନା (ଦ୍ୱିତୀୟ ଭାଗ)**, ୨୦୦୭, ପୃ.୨୯୬, ଅପୂର୍ବା, ଭୁବନେଶ୍ୱର ।

୧୯୯୬ ଅକ୍ଟୋବର ମାସ ୪ ତାରିଖରୁ ୧୯୯୮ ମାର୍ଚ୍ଚ ୩୧ ତାରିଖ ଯାଏ ଦୈନିକ 'ସମ୍ବାଦ'ର ସଂପାଦକୀୟ ପୃଷ୍ଠାରେ ପ୍ରକାଶିତ 'ଭାଷା ଭାବନା' ସ୍ତମ୍ଭ ଲେଖାଗୁଡ଼ିକର ନିର୍ବାଚିତ ସଂକଳନ । ଏହି ସ୍ତମ୍ଭରେ ପ୍ରକାଶିତ ଶୁଦ୍ଧ-ଅଶୁଦ୍ଧ ଶବ୍ଦ ବିଚାର ଓ ଆଉ କେତୋଟିକୁ ବାଦ୍ ଦେଇ ପ୍ରାୟ ସବୁ ଲେଖା ଏଥିରେ ସଂକଳିତ ହୋଇଛି । ସେତେବେଳେ ରବିବାର ବ୍ୟତୀତ ଅନ୍ୟ ଦିନଗୁଡ଼ିକରେ ଏହି ଲେଖା 'ସମ୍ବାଦ'ର ସବୁ ସଂସ୍କରଣରେ ସ୍ଥାନ ପାଉଥିଲା । ଓଡ଼ିଆ ସମ୍ବାଦପତ୍ରରେ ଦୈନିକ ସ୍ତମ୍ଭ ଲିଖନର ପରଂପରା ଏହି 'ଭାଷା ଭାବନା' ଠାରୁ ଆରମ୍ଭ ହୋଇଛି । କେବଳ

ଓଡ଼ିଶା କାହିଁକି ଭାରତ ବା ପୃଥିବୀର କୌଣସି ଭାଷାବିତ୍ ଏପରି ଦୈନିକ ସ୍ତମ୍ଭ ଲେଖିଥିବେ କି ନାହିଁ ସଂଦେହ । ସେତେବେଳେ ଡକ୍ଟର୍ ତ୍ରିପାଠୀ ଖବରକାଗଜରେ ମୁଦ୍ରଣଗତ ତ୍ରୁଟି ଆଶଙ୍କା କରି ନିଜେ ଲେଖାକୁ ଡି.ଟି.ପି. କରାଇ 'ସମ୍ବାଦ'କୁ ପଠାଉଥିଲେ ଓ ତାହା ସଂପାଦିତ ନହୋଇ ସିଧା ଛାପା ହେଉଥିଲା ।

୧୪. **ଅର୍ଥବୋଧ ସମାର୍ଥ ଶବ୍ଦାବଳି**, ୨୦୦୭, ପୃ.୫୬, ଅପୂର୍ବା, ଭୁବନେଶ୍ୱର ।

ଓଡ଼ିଆ ଭାଷାରେ ପ୍ରଚଳିତ ବହୁ ସମାର୍ଥକ ଶବ୍ଦାବଳି ଓ ସମାର୍ଥକ ଶବ୍ଦ ଗଠନର ସୂତ୍ରାବଳି ଏଥିରେ ସ୍ଥାନ ପାଇଛି ।

୧୫. **ଇଟିଭି ଭାଷା ସହଚର**, ୨୦୦୭, ପୃ.୧୯୨, ପ୍ରକାଶକ- ନୀଳାମ୍ବର ରଥ, ରାମୋଜି ଫିଲ୍ମ ସିଟି, ହାଇଦ୍ରାବାଦ ।

କେବଳ 'ଇଟିଭି ଓଡ଼ିଆ' ପରିବାର ମଧ୍ୟରେ ଏ ବହିର ପ୍ରସାରଣ । ବୈଦ୍ୟୁତିକ ଗଣମାଧ୍ୟମ ପାଇଁ ଓଡ଼ିଆକୁ ବହୁଜନଗ୍ରାହ୍ୟ ଭାଷାରୂପେ ଠିଆ କରେଇବା ଲକ୍ଷ୍ୟରେ ବହିଟି ରଚିତ । ଟିଭିର ସମ୍ବାଦ ପଠନ ବା ଅନ୍ୟାନ୍ୟ କାର୍ଯ୍ୟକ୍ରମଗୁଡ଼ିକରେ କିପରି ସହଜ, ସରଳ ଓ ଦେଶୀୟ ଶବ୍ଦମାନ ବ୍ୟବହାର କରାଯାଇପାରିବ ଏଥିପ୍ରତି ଗୁରୁତ୍ୱାରୋପ କରାଯାଇଛି । ବହିରେ ପ୍ରାୟ ଅଢେ଼ଇ ଶହରୁ ଊର୍ଦ୍ଧ୍ୱ ଦେଶୀୟ ଶବ୍ଦଗୁଡିକର ଅର୍ଥ ସହିତ ଏକ ତାଲିକା ଦିଆ ହୋଇଛି । ଉଚ୍ଚାରଣ ବେଳେ ତାନ, ସ୍ୱର, ଗୁଣ (quality) ବାରଂବାରତା (frequency), ତୀବ୍ରତା ଆଦି ପ୍ରତି ଧ୍ୟାନ ଦେବା କଥା କୁହାଯାଇଛି । ଭାଷା ବ୍ୟବହାର ସମୟରେ ବୃଥାଶବ୍ଦ ବ୍ୟୟ, ଅତିଶୟୋକ୍ତି ଓ ବାଗାଡଂବର ବର୍ଜନ କରିବା ପାଇଁ ପରାମର୍ଶ ଦିଆଯାଇଛି । ମନଲୋଭା, କାନଲୋଭା ଓ ପ୍ରଭାବଶାଳୀ ଢଙ୍ଗରେ ଭାଷାକୁ ବ୍ୟବହାର କରାଯିବା ପାଇଁ ପାଞ୍ଚଟି 'ତା' ଓ ଆଠଟି 'ନା'ର କଥା ଲେଖକ ଉଲ୍ଲେଖ କରିଛନ୍ତି । ସେଗୁଡ଼ିକ ହେଉଛି : 'ତା' :- ଶୀଘ୍ରତା, ଶୁଦ୍ଧତା, ସରଳତା, ସମରୂପତା, ସ୍ୱଚ୍ଛତା । ଆଠଟି 'ନା' :- ବାଣୀସାଧନା, ଧ୍ୱନି ତୁଳନା, ପଦ ସର୍ଜନା, ବାକ୍ୟ ରଚନା,ତ୍ରୁଟିମାର୍ଜନା, ଭାଷା ଭାବନା, ଶବ୍ଦ ଗଣନା, ଶକ୍ତି କଳନା । ସେହିପରି ଅକ୍ଷର ସଂଯୋଜନ ବା ଧ୍ୱନି ଉଚ୍ଚାରଣ ବେଳେ ଯଥା ସ୍ଥାନରେ ଫାଙ୍କ ନ ରହିଲେ ଯେଉଁ ଅର୍ଥ ବିଭ୍ରାଟ ଘଟେ ଏଥିରେ ସୂଚିତ ହୋଇଛି । ଯଥା: କବିରାଜି = କବି ରାଜି । ଏଥିରେ ଏହିପରି ବହୁ ସୂକ୍ଷ୍ମତତ୍ତ୍ୱ ସ୍ଥାନ ପାଇଛି ।

୧୬. **ସରଳ ଓଡ଼ିଆ ଶବ୍ଦବୋଧ**, ୨୦୦୭, ପୃ.୬୬, ଲାର୍କ ବୁକ୍ସ, ଭୁବନେଶ୍ୱର ।

ଶବ୍ଦବୋଧରେ ପରିଚ୍ଛନ୍ନତା ଆସିବା ପାଇଁ ବହିଟି ଉଦ୍ଦିଷ୍ଟ । ପ୍ରଥମେ କିଛି ଗ୍ରହଣୀୟ - ଅଗ୍ରହଣୀୟ ବନାନ ସଂପର୍କିତ ସୂଚିତ ଅଛି । ପ୍ରତ୍ୟେକ ଶବ୍ଦର ତିନିଟି ଅର୍ଥ ସହିତ ସମୁଦାୟ ୨୫୯ଟି ଶବ୍ଦର ଅର୍ଥ ରହିଛି । ସେହିପରି ୨୮୯ଟି ଶବ୍ଦପୁଞ୍ଜର ପ୍ରାୟ ସମୋଚ୍ଚାରିତ ଶବ୍ଦାବଳି ସାଙ୍ଗକୁ ୮୫ଟି ଶବ୍ଦପୁଞ୍ଜର ଅର୍ଥ ପାର୍ଥକ୍ୟ ବ୍ୟାଖ୍ୟା ହୋଇଛି । ଯଥା :-

ଅନୁରୋଧ : ସମସ୍ତରର ବ୍ୟକ୍ତିଙ୍କୁ ଅନୁରୋଧ କରାଯାଏ ।

ନିବେଦନ : ସର୍ବସାଧାରଣଙ୍କୁ ନିବେଦନ କରାଯାଏ ।

ପୁଣି ଶତାଧିକ ପ୍ରତ୍ୟୟର ତାଲିକା, ସ୍ୱର ଚିହ୍ନ, ବ୍ୟଞ୍ଜନ ଚିହ୍ନ, ଯୁଗ୍ମାକ୍ଷର, ବ୍ୟକ୍ତି ଓ ସ୍ଥାନନାମ ଆଦିର ଲିଖିତ ରୂପ ଦର୍ଶାଯାଇଛି । ସଂବଲପୁର, ବ୍ରହ୍ମପୁର, ନୟାଗଡ଼, କୋରାପୁଟ, ଫୁଲବାଣୀ ଓ ବାଲେଶ୍ୱର ଅଞ୍ଚଳର ସମୁଦାୟ ୧୭୯ଟି ଆଞ୍ଚଳିକ ଶବ୍ଦାବଳି ଅର୍ଥ ସହ ସ୍ଥାନିତ ଏବଂ ୨୬ଟି ଏକଶବ୍ଦୀକରଣର ଉଦାହରଣ ରହିଛି ।

୧୭. **ଓଡ଼ିଆ ଉଚ୍ଚାରଣ**, ୨୦୦୮, ପୃ.୮୦, ଅପୂର୍ବା, ଭୁବନେଶ୍ୱର ।

ଓଡ଼ିଆ ବନାନ ଓ ଉଚ୍ଚାରଣରେ ବହୁ ବିଶୃଙ୍ଖଳା ହେଉଥିବାରୁ ଏଥିପ୍ରତି ସଚେତନ କରାଇବା ଲକ୍ଷ୍ୟରେ ଏ ବହିଟି ରଚିତ । କଥନ ଅଭ୍ୟାସ, ଉଚ୍ଚାରଣ କୋଷ, ଜ - ଯ ଭେଦ, ଶ-ଷ-ସ ଭେଦ, ତ୍ରୁଟି ମାର୍ଜନା, ଯୋଡ଼ା-ଛଡ଼ା, ଶବ୍ଦ-ବିଶ୍ଳେଷଣ, ବ୍ୟଞ୍ଜନ ବର୍ଣ୍ଣ ତୁଳନା, ବ୍ୟଞ୍ଜନ ଧ୍ୱନି ଭେଦ, ଶବ୍ଦର ବର୍ଗାନ୍ତର ଏହି ଦଶଟି ପ୍ରସଙ୍ଗ ସ୍ଥାନିତ ହୋଇଛି । 'ଉଚ୍ଚାରଣ କୋଷ'ରେ ହଜାରରୁ ଅଧିକ ଶବ୍ଦ ଉଚ୍ଚାରଣ ସହ ସ୍ଥାନିତ ହୋଇଛି । ପ୍ରାୟ ପ୍ରତି ଶବ୍ଦରେ ଏକ ହାଇଫେନ୍‌ଦ୍ୱାରା ବିରାମ ସୂଚିତ ହୋଇ ଶବ୍ଦର ଉଚ୍ଚାରଣ ଦର୍ଶାଯାଇଛି ।

୧୮. **ଓଡ଼ିଆ ମାତ୍ରା ଓ ଫଳା**, ୨୦୦୯, ପୃ. ୧୦୪, ଶ୍ରଦ୍ଧା ପବ୍ଲିକେଶନ୍, ବାଲେଶ୍ୱର ।

ଏ ବହିରେ ଓଡ଼ିଆ ଅକ୍ଷର ଲିଖନ ଶିକ୍ଷା, ମାତ୍ରା ଓ ଫଳା, ଲିପିର ନକ୍ସା, ହଳନ୍ତ, ଚନ୍ଦ୍ରବିନ୍ଦୁ, ବିସର୍ଗ, ରେଫ, ଅନୁସ୍ୱାର, ଯୁକ୍ତବର୍ଣ୍ଣ ଆଦିର ବ୍ୟବହାର ସଂପର୍କିତ ସୂକ୍ଷ୍ମଧାରଣା ଦର୍ଶାଯାଇଛି । କମା, ପୂର୍ଣ୍ଣଚ୍ଛେଦ ଆଦି ଚିହ୍ନଗୁଡ଼ିକର ବ୍ୟାବହାରିକ ଦିଗ ସାଂଗକୁ ଛାପା ପାଠରେ ବ୍ୟବହୃତ କେତୋଟି ଅନକ୍ଷର ଯଥା - © @ ∵ ଆଦିର

ଓଡ଼ିଆ ନାମ ଲିପିବଦ୍ଧ ହୋଇଛି । ଓଡ଼ିଆ ବର୍ଣ୍ଣର ପୂର୍ବ ରୂପ ଓ ବର୍ତ୍ତମାନର ରୂପକୁ ମଧ୍ୟ ପରିଷ୍କାରଭାବେ ଲେଖାଯାଇଛି । ଏ ବହିରେ ମଧ୍ୟ 'O' ରୁ ଅକ୍ଷର ଲିଖନ ଆରମ୍ଭ କଥା କୁହାଯାଇଛି । 'ଓଡ଼ିଆ ଲିପିର ନକ୍ସା' ରେ ଲିପିର ଉପରେ, ତଳେ, ବାମେ ଓ ଡାହାଣେ ମାତ୍ରା, ଫଳା, ଯୁକ୍ତାକ୍ଷର ଆଦି ରହିବାର ସଂଯୋଜନ ପଦ୍ଧତି ଚିତ୍ର ମାଧମରେ ଛଅଟି ବାକ୍ସରେ ଦର୍ଶାଯାଇଛି । ଫଳରେ କେଉଁ ସ୍ଥାନରେ କେଉଁ ଚିହ୍ନ ରହେ ଏକ ସ୍ପଷ୍ଟ ଧାରଣା ହୋଇପାରିଛି ।

୧୯. **ଦ୍ୱିଭାଷୀ ସମାର୍ଥ କୋଷ**, ୨୦୧୦, ପୃ.୧୦୪, ବିଜୟିନୀ ପବ୍ଲିକେଶନ୍ସ, କଟକ ।

ବହିଟି ମୁଖ୍ୟତଃ ତିନିଟି ବିଷୟକୁ ନେଇ ଲିଖିତ । ୧. ଓଡ଼ିଆ-ଇଂଲିଶ୍ ସମାର୍ଥ କୋଷ । ଏଥିରେ ପୃଷ୍ଠା ୫ରୁ ୬୦ ଯାଏ ଅନେକ ଓଡ଼ିଆ ଓ ଇଂରାଜି ଶବ୍ଦର ପ୍ରତିଶବ୍ଦ ରହିଛି । ଯଥା: ଅକଳନ, ଅମାପ, ଅସଂଖ୍ୟ, ଅଜସ୍ର ତଳକୁ ଇଂରାଜି ଧାଡ଼ିରେ ରହିଛି Innumerable, Countless । ୨. 'ମୌଳିକ ଇଂଲିଶ୍ - ଓଡ଼ିଆ'ରେ କିଛି ମୌଳିକ ଇଂରାଜି ଶବ୍ଦ ରହିଛି ଓ ଡାହାଣରେ ଓଡ଼ିଆ ପ୍ରତିଶବ୍ଦ ରହିଛି । ଯଥା: Account: ହିସାବ, ବିବରଣ । ୩. 'ଉନ୍ନତ ଇଂଲିଶ୍ - ଓଡ଼ିଆ' ରେ ବହୁ ଇଂରାଜି ଶବ୍ଦର ତାଲିକା ସହିତ ଓଡ଼ିଆ ପ୍ରତିଶବ୍ଦ ରହିଛି । ଯଥା: Accolade- ଆଲିଙ୍ଗନ, ପୁରସ୍କାର । ବହିର ଶବ୍ଦଗୁଡ଼ିକ ବର୍ଣ୍ଣକ୍ରମରେ ଲିଖିତ ।

୨୦. **ଅନକ୍ଷର**, ୨୦୧୦, ପୃ. ୨୨୦, ଅପୂର୍ବା, ଭୁବନେଶ୍ୱର ।

ପୂରା ବହିଟି ଓଡ଼ିଆ ମାତ୍ରା, ଫଳା ଆଦି ଅନକ୍ଷର ସଂପର୍କିତ ଲିଖିତ । ଲେଖକ କେତେକ ସ୍ଥଳରେ ବର୍ଣ୍ଣ/ଯୁକ୍ତବର୍ଣ୍ଣକୁ ବୁଝାଇବା ପାଇଁ ଅନ୍ୟ ଅଭିଧାନରେ ପରିଚୟ କରାଇଛନ୍ତି । ଯଥା: ଅର୍ଦ୍ଧାକ୍ଷର( କ-ଫଳା ୍କ ), ସଂକେତାକ୍ଷର ( ସଂପୃକ୍ତ ବର୍ଣ୍ଣସୂଚକ ଏକ ସାଂକେତିକ ଚିହ୍ନ, ଛ-ଫଳା ୍ଛ), କ୍ଷୁଦ୍ରାକ୍ଷର ('ଙ୍ଖ'ର ତଳେ ଥିବା ଛୋଟ 'ଖ'), ଭିନ୍ନାକ୍ଷର (ଗୋଟିକିଆ ଯୁକ୍ତବର୍ଣ୍ଣ- 'ଙ୍କ'), ପୂର୍ଣ୍ଣାକ୍ଷର (ଏକକ ବର୍ଣ୍ଣ- 'କ') ।

'ରେଫ' ପ୍ରସଙ୍ଗରେ ପୂର୍ଣ୍ଣ/ପୂର୍ଣ୍ଣ, କାର୍ଯ୍ୟ/କାର୍ଯ୍ୟ ଆଦି ଉଭୟ ଶୁଦ୍ଧ ଲେଖାଥିବା ରାମକୃଷ୍ଣ ନନ୍ଦଙ୍କ 'ଲେଖନୀର ପାଠଶାଳା'ରୁ ଉଦାହରଣ ଦିଆଯାଇଛି । କଂପ୍ୟୁଟରରେ ଯୁକ୍ତବର୍ଣ୍ଣ ସଂଯୋଜନ ନିମନ୍ତେ ଅଧିକ ଟିପାଘାତ କରି ଲେଖିବା ବିକଳ୍ପରେ ଭାଙ୍ଗିକରି ଲେଖାଯିବାରେ ତ୍ରିପାଠୀଙ୍କ ଯୁକ୍ତି ବେଶ୍ ତାତ୍ପର୍ଯ୍ୟପୂର୍ଣ୍ଣ । ତାଙ୍କର ଏକ ହିସାବ ଅନୁଯାୟୀ ଗୋଟିଏ ପୃଷ୍ଠା ଖବରକାଗଜ ପାଇଁ ପାରଂପରିକ ବନାନ ବା ଯୁକ୍ତବର୍ଣ୍ଣ ବନାନରେ

ସମୁଦାୟ ପ୍ରାୟ ୩୫,୨୦୦ ଟିପାଘାତ ଆବଶ୍ୟକ ହେଉଥିବା ବେଳେ ନୂତନ ବନାନ ଧାରା ବା ଅନୁସ୍ୱାର, ଦ୍ୱିତ୍ୱ ବର୍ଜନ କରି ଲେଖିଲେ ପ୍ରାୟ ୨୬,୪୦୦ ଟିପାଘାତ ଆବଶ୍ୟକ ହୋଇଥାଏ । ଫଳରେ ପ୍ରତି ପୃଷ୍ଠାର ଅକ୍ଷର ସଂଯୋଜନ ପାଇଁ ୮୮୦୦ ଟିପାଘାତ ସଂଚୟ କରାଯିବା ସହିତ ଶ୍ରମ ଓ ସମୟ ବଂଚିବ ବୋଲି ତାଙ୍କର ମତ । ସେହିପରି ବ୍ୟାକରଣ ଅନୁଯାୟୀ ଯୁକ୍ତବର୍ଣ୍ଣ ବଦଳରେ ଅନୁସ୍ୱାର ଦେଇ ଲେଖିବା ପ୍ରସଙ୍ଗରେ ବିଭିନ୍ନ ବହି, ପତ୍ରପତ୍ରିକା ଓ ଖବରକାଗଜ ଆଦି ସତରଟି ଉତ୍ସରୁ ବକ୍ତବ୍ୟ ଉଲ୍ଲେଖ କରି ତାଙ୍କର ମତକୁ ବଳିଷ୍ଠ କରିଛନ୍ତି ।

୨୧. **ଶବ୍ଦଜ୍ଞାନ ପରୀକ୍ଷା**, ୨୦୧୧, ପୃ. ୮୮, ବିଜୟିନୀ ପବ୍ଲିକେଶନ୍ସ, କଟକ ।

ଓଡ଼ିଆ ଶବ୍ଦଜ୍ଞାନ ବୃଦ୍ଧି ନିମନ୍ତେ ଛାତ୍ରପୋଯୋଗୀ ବହିଟିଏ । ଏଥିରେ ବନାନ, ଶୂନ୍ୟସ୍ଥାନ ପୂରଣ, ଭୁଲ-ଠିକ୍ ବାଛିବା ଆଦି ସ୍ଥାନ ପାଇଛି । ସବା ଶେଷକୁ ଉତ୍ତର ଲେଖାଅଛି ।

୨୨. **ଶବ୍ଦଗଠନ କୋଷ**, ୨୦୧୧, ପୃ.୨୬୦, ଲାର୍କ ବୁକ୍ସ, ଭୁବନେଶ୍ୱର ।

ଶବ୍ଦଗୁଡ଼ିକୁ ସ୍ମୃତିରେ ସାଇତିବା ଅପେକ୍ଷା ଶବ୍ଦଗଠନର ସୂତ୍ରାବଳି ଆୟତ୍ତ କରିବାକୁ ଏଥିରେ ଗୁରୁତ୍ୱ ଦିଆଯାଇଛି । ଶବ୍ଦକୋଷ ଶୈଳୀରେ ପ୍ରସ୍ତୁତ ଏ ବହିରେ, ବ୍ୟବହୃତ ଓଡ଼ିଆ ଉତ୍ପାଦକ ଶବ୍ଦଗୁଡ଼ିକର ଗଠନ ସୂତ୍ର ସନ୍ନିତ ହୋଇଛି । ପ୍ରଚଳିତ ଶବ୍ଦଗୁଡ଼ିକୁ ଉପାଦାନ କ୍ରମରେ ସଜାଇ ଦିଆଯାଇଛି । ଶବ୍ଦର ପୂର୍ବ ଓ ପର ଅଂଶଗୁଡ଼ିକୁ ଶବ୍ଦକୋଷ ରୀତିରେ ଏକତ୍ର ଲେଖାଯାଇଥିବାରୁ ଯୌଗିକ ଶବ୍ଦଗୁଡ଼ିକର ଗଠନ ବୁଝିବାରେ ସହାୟକ ହୋଇଛି । ପରିଶିଷ୍ଟରେ ବିଶେଷ୍ୟର ପ୍ରକାର ଭେଦ, ବିପରୀତସୂଚକ କ୍ରିୟା, କ୍ରିୟା ଗଠନ ଆଦି ସଂପର୍କରେ ସୂଚିତ ଅଛି ।

୨୩. **ପୁସ୍ତକ ରଚନା ବିଧି**, ୨୦୧୧, ପୃ.୨୩୨, ଓଡ଼ିଶା ରାଜ୍ୟ ପାଠ୍ୟ ପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା, ଭୁବନେଶ୍ୱର ।

ଓଡ଼ିଆ ଭାଷା ପ୍ରୟୋଗର ପଦ୍ଧତି ଧୀରେ ଧୀରେ ବିଗିଡ଼ି ଯାଉଥିବାରୁ ଏହାକୁ ଶୃଙ୍ଖଳାବଦ୍ଧ କରିବା ଲକ୍ଷ୍ୟରେ ଏ ବହିଟି ରଚିତ । ଏଥିରେ ପାଣ୍ଡୁଲିପି, ପାଠ ସଂପାଦନ, ଲିପି ସଂଯୋଜନ, ବନାନ ସମୀକରଣ, ବର୍ଣ୍ଣଭେଦ, ଆଦି ପ୍ରସଙ୍ଗରେ ଆଲୋଚନା କରାଯାଇଛି । ବ୍ୟାକରଣଦ୍ୱାରା ସମର୍ଥିତ ଏକାଧିକ ପ୍ରକାର

ବନାନ ମଧ୍ୟରୁ କେବଳ ଧାରାବଦ୍ଧ ଓ ସରଳ ବନାନ ଏହି ବହି ପାଇଁ ଗ୍ରହଣ କରାଯାଇଛି ।

୨୪. **ଶବ୍ଦକୋଷ**, ଅପ୍ରେଲ୍ ୨୦୧୨, ପୃ.୧୭୨, ଅପୂର୍ବା, ଭୁବନେଶ୍ୱର ।

ଏଥିରେ ରହିଛି ୪୦୦୦ରୁ ଅଧିକ ଶବ୍ଦର ସରଳାର୍ଥ । ୬୮ଟି ଶବ୍ଦର ନାମାବଳି । ଯଥା- ପକ୍ଷୀ ନାମାବଳି: କାଉ, ପାରା, ବଗ ଇତ୍ୟାଦି । ସଂଖ୍ୟାତ୍ମକ ଶବ୍ଦାବଳିରେ ରହିଛି ଦ୍ୱି,ତ୍ରି,ଚତୁଃ ଆଦି ମୂଳରେ ଥାଇ ଗଠିତ ଶବ୍ଦର ଅର୍ଥ । ଯଥା- ତ୍ରିଫଳା: ହରିଡ଼ା, ବାହାଡ଼ା, ଅଁଳା । ଏମିତି 'ଅଷ୍ଟାଦଶ' ଯାଏ ରହିଛି । 'ବ୍ୟକ୍ତି ନାମାବଳି'ରେ ଅଛି ନାମର ପ୍ରଥମାଂଶସୂଚକ ଓ ଦ୍ୱିତୀୟାଂଶସୂଚକ ତାଲିକା । ଯଥା- ପ୍ରଥମାଂଶସୂଚକ: ଅରୁନ୍ଧତୀ, ଦେବବାଳା ଇତ୍ୟାଦି । ଦ୍ୱିତୀୟାଂଶ: ଗୋଲୋକ ବିହାରୀ, ରମେଶ ଚନ୍ଦ୍ର ଇତ୍ୟାଦି । ଦାଶ, ଧଳ, ପରିଡ଼ା, ମହାନ୍ତି ଆଦି ୩୦୦ରୁ ଅଧିକ କୁଳ ନାମ ସୂଚି ସହିତ କିଛି ଅବ୍ୟୟ ଓ କ୍ରିୟାମୂଳ ସୂଚି ରହିଛି ।

୨୫. **ବ୍ୟାକରଣ କୋଷ**, ୨୦୧୩, ପୃ. ୪୧୬, ଅକ୍ଷର, କଟକ ।

ଓଡ଼ିଆ ବ୍ୟାକରଣରେ ବ୍ୟବହୃତ ପରିଭାଷାଗୁଡ଼ିକ ଆଭିଧାନିକ ରୀତିରେ 'ଅ' ଠାରୁ ଆରମ୍ଭ ହୋଇ 'ହ୍ରସ୍ୱ ସ୍ୱର' ଯାଏ ସ୍ଥାନ ପାଇଛି । ଓଡ଼ିଆ ଭାଷାରେ ଏପରି ବହି ପ୍ରଥମ । ବିଭିନ୍ନ ବ୍ୟାକରଣିକ ଶବ୍ଦକୁ ବ୍ୟାଖ୍ୟା କରିବା ସହିତ 'ଶ-ଷ-ସ ଭେଦ' ଶବ୍ଦରେ ୮୨୨ଟି ଶବ୍ଦର ତାଲିକା ଦେଇ ପାଠକର ସଂଦେହ ଦୂରୀକରଣ ନିମନ୍ତେ ପ୍ରୟାସ କରିଛନ୍ତି । ସେହିପରି 'ଗାଳି'ର ଭାଷାତାତ୍ତ୍ୱିକ ଉପଯୋଗିତା ନିମନ୍ତେ ସତରଟି ଗାଳି ଶବ୍ଦ ଲେଖିଛନ୍ତି । ପୁନଶ୍ଚ 'ବହୁ ବ୍ୟବହୃତ ଓଡ଼ିଆ ଶବ୍ଦ'ରେ ୬୦ ଲକ୍ଷ ୫୦ ହଜାର ଶବ୍ଦ ବିଶିଷ୍ଟ ବିଭିନ୍ନ ପ୍ରକାର ପାଠ୍ୟ ସାମଗ୍ରୀର ବିଶ୍ଳେଷଣରୁ ଜ୍ଞାତ ଏକ ତଥ୍ୟ କଂପ୍ୟୁଟର ସାହାଯ୍ୟରେ ସଂଗୃହୀତ କରାଯାଇ ହଜାରରୁ ଅଧିକ ଥର ବ୍ୟବହାର ହୋଇଥିବା ୨୭୩ଟି ଶବ୍ଦର ତାଲିକା ଦେଇଛନ୍ତି । ସେହିପରି ୧୫୭ଟି 'ଏକାକ୍ଷରୀ' ଶବ୍ଦର ଅର୍ଥ ସହିତ ଏକ ତାଲିକା ସ୍ଥାନ ପାଇଛି ।

୨୬. **ଓଡ଼ିଆ ବନାନ ଧାରା**, ୨୦୧୩, ପୃ. ୨୮୮, ବିଜୟିନୀ ପବ୍ଲିକେଶନ୍ସ, କଟକ ।

ଯେଉଁ ଓଡ଼ିଆ ଶବ୍ଦର ବନାନରେ ସାମାନ୍ୟ ସଂଦେହ ଉପୁଜିବାର ସଂଭାବନା ଅଛି, ସେପରି ଶବ୍ଦଗୁଡ଼ିକର ଏକ ବର୍ଣ୍ଣାନୁକ୍ରମିକ ତାଲିକା ଏ ବହିରେ ସଂକଳିତ ହୋଇଛି । ଓଡ଼ିଆ ଭାଷାରେ ପ୍ରକାଶିତ ବିଭିନ୍ନ ଉତ୍ସ ବିଶେଷକରି 'ଶବ୍ଦତତ୍ତ୍ୱବୋଧ

ଅଭିଧାନ', 'ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ', 'ପ୍ରମୋଦ ଅଭିଧାନ' ଓ 'ତରୁଣ ଶବ୍ଦକୋଷ' ଆଦି ଗ୍ରନ୍ଥଗୁଡ଼ିକର ଶବ୍ଦାବଳି ବନାନର ମୌଳିକ ଭିତ୍ତିରେ ଏହି ଶବ୍ଦଚୟନ ଓ ବନାନ ରୀତି ସ୍ଥିର କରାଯାଇଛି । କେବଳ ଶୁଦ୍ଧରୂପ ଦର୍ଶାଇବା ଏହି ପୁସ୍ତକର ଲକ୍ଷ୍ୟ ହୋଇଥିବାସ୍ଥଳେ ସାମାନ୍ୟ ପାର୍ଥକ୍ୟ ଥିବା ଅଳ୍ପ କେତୋଟି ଶବ୍ଦର ଅର୍ଥ ପାଠକଙ୍କ ସଂଦେହ ଦୂରୀକରଣ ନିମନ୍ତେ ସ୍ଥାନ ପାଇଛି ।

ଉପରେ ସୂଚିତ ହୋଇଥିବା ବହିଗୁଡ଼ିକର ପ୍ରକାଶନ ଛଡ଼ା ସହଯୋଗୀ ସଂକଳକ/ସଂପାଦକ ଭାବେ ଡକ୍ଟର୍ ତ୍ରିପାଠୀ 'ଛବିଳ ଅଭିଧାନ' (୧୯୮୮ SCERT ଭୁବନେଶ୍ୱରଦ୍ୱାରା ପ୍ରସ୍ତୁତ, ଓଡ଼ିଶା ରାଜ୍ୟ ପାଠ୍ୟ ପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା, ଭୁବନେଶ୍ୱରଦ୍ୱାରା ପ୍ରକାଶିତ); 'ପ୍ରଶାସନ ଶବ୍ଦକୋଷ' (୧୯୯୬) ବିଧି ବିଭାଗ, ଓଡ଼ିଶା ସରକାର ଏବଂ 'English - Oriya Dictionary'ରେ (ପ୍ରକାଶନ- ୨୦୦୦, ଓଡ଼ିଶା ରାଜ୍ୟ ପାଠ୍ୟ ପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା, ଭୁବନେଶ୍ୱର) କାର୍ଯ୍ୟ କରିଛନ୍ତି ।

ଓଡ଼ିଆ ଲିପିକୁ କଂପ୍ୟୁଟର ଉପଯୋଗୀ କରିବା କ୍ଷେତ୍ରରେ ସି-ଡାକ୍ (C-DAC) ପୁଣେ ଓ ଓକାକ୍ (OCAC) ଭୁବନେଶ୍ୱର ସହିତ ଦୀର୍ଘକାଳୀନ ପ୍ରତ୍ୟକ୍ଷ ସହଯୋଗ କରିଛନ୍ତି । ଏଥି ସହ ସେ ଭାରତ ସରକାରଙ୍କ ଟି.ଡି.ଆଇ.ଏଲ୍. (TDIL) ପ୍ରକଳ୍ପରେ ପ୍ରତ୍ୟକ୍ଷ ଅଂଶଗ୍ରହଣ କରି ଓଡ଼ିଆ ଲିପିକୁ ଇଉନିକୋଡ୍‌ରେ ପ୍ରବେଶାଧିକାର ଦେବା କ୍ଷେତ୍ରରେ ଗବେଷଣାତ୍ମକ ସହଯୋଗ କରିଛନ୍ତି । ସି-ଡାକ୍ ଆନୁକୂଲ୍ୟରେ 'ଓଡ଼ିଆ ବନାନ ସାଧକ' (Odia Spell - Checker) ଲିପ୍ ଅଫିସ୍ ଓଡ଼ିଆ ସଫ୍‌ଟୱେର୍ ପ୍ରସ୍ତୁତିରେ ତଥ୍ୟ ସଂଗ୍ରହକାରୀ ବିଶ୍ଳେଷକ ଓ ସୂତ୍ର ଉଦ୍‌ଭାବକରୂପେ ଯୋଗଦାନ ଉଲ୍ଲେଖଯୋଗ୍ୟ । ଏହି ବନାନ ସାଧକ ୧୯୯୯ ମସିହାରେ ମୁଖ୍ୟମନ୍ତ୍ରୀ ଗିରିଧର ଗମାଙ୍ଗଙ୍କଦ୍ୱାରା ଲୋକାର୍ପିତ ହୋଇଛି । ଉଭୟ ପାରଂପରିକ ଓ ସଂସ୍କାରିତ ବନାନ ଧାରାରେ ପ୍ରସ୍ତୁତ ଏହି ସଫ୍‌ଟୱେର୍‌ରେ ଶିକ୍ଷା,ପ୍ରଶାସନ, ସାହିତ୍ୟ, ସାମ୍ବାଦିକତା ଓ ନିତିଦିନିଆ ଜୀବନ ଆଦି ଭାଷା ବ୍ୟବହାର କ୍ଷେତ୍ରରେ ସଂଗୃହୀତ ପ୍ରାୟ ୫୯ ହଜାର ମୂଳ ଶବ୍ଦ ସ୍ଥାନିତ ଏହି ବନାନ ସାଧକ ପ୍ରାୟ ୫୦ ଲକ୍ଷ ଓଡ଼ିଆ ଶବ୍ଦପୁଞ୍ଜର ବନାନ ଯାଞ୍ଚ କରିବାକୁ ସମର୍ଥ ହୋଇଛି । (- 'ସମ୍ବାଦ', ଭୁବନେଶ୍ୱର-୨.୪.୧୯୯୯, ପୃଷ୍ଠା-୧ ଓ ୭ ।)

ଭାଷା ଶିକ୍ଷାଦାନ କ୍ଷେତ୍ରରେ ୧୯୯୬ରୁ ଭୁବନେଶ୍ୱରର ଚନ୍ଦ୍ରଶେଖରପୁରସ୍ଥିତ 'ଗୋପବନ୍ଧୁ ପ୍ରଶାସନ ଏକାଡେମୀ'ରେ ଅଣଓଡ଼ିଆ ଆଇ.ଏ.ଏସ୍. ଅଧିକାରୀମାନଙ୍କୁ

ଓଡ଼ିଆ ଭାଷାରେ ଦକ୍ଷତା ବୃଦ୍ଧି ନିମନ୍ତେ ଶିକ୍ଷାଦାନ କରି ଆସୁଛନ୍ତି । ସେହିପରି 'ସମ୍ବାଦ'ର ସାମ୍ବାଦିକମାନଙ୍କର ଦକ୍ଷତା ବୃଦ୍ଧି ନିମନ୍ତେ ନିରନ୍ତର ଭାଷା ପରୀକ୍ଷଣ, ପାଠ ସମ୍ପାଦନ, ତ୍ରୁଟି ନିବାରଣ କାର୍ଯ୍ୟକ୍ରମଗୁଡ଼ିକରେ ଶିକ୍ଷାଦାନ କରିଛନ୍ତି । ଦିନ ଥିଲା, 'ସମ୍ବାଦ' କାଗଜ ଛାପାହେବା ପୂର୍ବରୁ ସମ୍ପାଦନା ଦାୟିତ୍ୱରେ ଥିବା କର୍ମକର୍ତ୍ତାମାନେ ବନାନଗତ ଶୁଦ୍ଧତାପାଇଁ ତାଙ୍କ ସହିତ ଫୋନ୍‌ରେ ଯୋଗାଯୋଗ କରୁଥିଲେ । ଏପରିକି ଛାପା ପରେ ରହିଯାଉଥିବା ତ୍ରୁଟିକୁ ସେ ଦାଗ ଦେଇ ପ୍ରତିଦିନ 'ସମ୍ବାଦ' କାର୍ଯ୍ୟାଳୟକୁ ପଠାଉଥିଲେ । ଫଳରେ କର୍ମକର୍ତ୍ତାମାନଙ୍କ ମଧ୍ୟରେ ଭାଷାଚର୍ଚ୍ଚା ହୋଇପାରୁଥିଲା । ଏଥି ସହିତ 'ସମ୍ବାଦ' ବା 'ଆମ ଓଡ଼ିଶା'ର 'ଶୁଦ୍ଧ ଓଡ଼ିଆ ଲିଖନ ପରୀକ୍ଷା' ନିମନ୍ତେ ଅଭ୍ୟାସ ପୁସ୍ତିକା ପ୍ରସ୍ତୁତି, ପରୀକ୍ଷା ପରିଚାଳନା, ମୂଲ୍ୟାଙ୍କନ, ପୁରସ୍କାର ବିତରଣ କ୍ଷେତ୍ରରେ ବହୁ ସକ୍ରିୟତା ପ୍ରଦର୍ଶନ କରିଛନ୍ତି । ନବମ, ଦଶମ ଶ୍ରେଣୀ ଛାତ୍ରଛାତ୍ରୀମାନଙ୍କଠାରେ ଓଡ଼ିଆ ଭାଷା ସଚେତନତା ବୃଦ୍ଧି ନିମନ୍ତେ ରାଜ୍ୟବ୍ୟାପୀ 'ଶୁଦ୍ଧ ଓଡ଼ିଆ ଲିଖନ ପରୀକ୍ଷା' ପ୍ରତିଯୋଗିତାର ସେ ହେଉଛନ୍ତି ମୁଖ୍ୟ ସୂତ୍ରଧର ।

୨୦୦୬ ମସିହାରେ ହାଇଦ୍ରାବାଦସ୍ଥିତ ରାମୋଜି ଫିଲ୍ମ ସିଟିରେ 'ଇଟିଭି ଓଡ଼ିଆ' ବିଭାଗର ସମ୍ବାଦ ବିଭାଗର ସବୁସ୍ତରର କର୍ମୀମାନଙ୍କୁ ନେଇ ଏକ 'ଭାଷା ଜ୍ଞାନାର୍ଜନ କର୍ମଶାଳା' ପରିଚାଳନା କରିଛନ୍ତି । ୨୦୧୨ ମସିହା ଏପ୍ରିଲ୍ ମାସ ୯ ତାରିଖରୁ ଦୈନିକ 'ସମ୍ବାଦ'ର ସମ୍ବଲପୁର ସଂସ୍କରଣରେ ସମ୍ବଲପୁରି 'ଭାଷାଚର୍ଚ୍ଚା' ସାପ୍ତାହିକ ସ୍ତମ୍ଭ ତାଙ୍କର ଆରମ୍ଭ ହୋଇଛି । କଟକ ରେଡିଓ କେନ୍ଦ୍ରରୁ ୨୦୧୩ ଏପ୍ରିଲ୍ ୧୫ ତାରିଖରୁ ପ୍ରତି ସୋମବାର ସକାଳ ୭ଟା ୩୫ରେ ପ୍ରସାରିତ ଭାଷାମୂଳକ ସାପ୍ତାହିକ କାର୍ଯ୍ୟକ୍ରମ 'ଠିକ୍ କହନ୍ତୁ ଠିକ୍ ଲେଖନ୍ତୁ'ରେ ସେ ମଧ୍ୟ ସଂପୃକ୍ତ ଅଛନ୍ତି ।

ଓଡ଼ିଆ ଭାଷାଭାଷୀଙ୍କ ମଧ୍ୟରେ ଭାଷା ସଚେତନତା ବୃଦ୍ଧି ନିମନ୍ତେ ସେ ବହୁ ପ୍ରଚାରପତ୍ର ବା ପାମ୍ଫଲେଟ୍‌ରେ ଲେଖା ପ୍ରସ୍ତୁତ କରିଛନ୍ତି । ତାଙ୍କଦ୍ୱାରା ଲିଖିତ ୨୦୦୭ ମାର୍ଚ୍ଚରେ 'ଅପୂର୍ବା'ଦ୍ୱାରା ପ୍ରକାଶିତ ଏ/୪ ସାଇଜର ଆଠ ପୃଷ୍ଠିଆ ପୁସ୍ତିକା ମାଗଣାରେ ବହୁ କପି ବିତରିତ ହୋଇଛି । 'ସରଳାର୍ଥ' ନାମକ ଏହି ପୁସ୍ତିକାରେ ପ୍ରାୟ ୧୨୦୦ ଶବ୍ଦର ସରଳ ଅର୍ଥ ଓ ପ୍ରାୟ ଅଢେଇ ଶହ ଦେଶୀ ଶବ୍ଦର ଅର୍ଥ ରହିଛି । ସେହିପରି 'ଗାୟତ୍ରୀ' ତରଫରୁ ପ୍ରକାଶିତ 'ଶବ୍ଦବୋଧ ପୂର୍ବାଭାସ' ପୁସ୍ତିକା (ତାଙ୍କ ବହିର ସାରାଂଶ) ମାଗଣାରେ ବହୁ କପି ବଣ୍ଟା ଯାଇଛି ।

ଉପରେ ସୂଚିତ ହୋଇଥିବା ବହିଗୁଡ଼ିକୁ ଅନୁଧ୍ୟାନ କଲେ ଜଣାଯାଏ ଯେ,ବହିଗୁଡ଼ିକର ପାଠ କିଛି ପରିମାଣରେ ତାଙ୍କର ଅନ୍ୟ ବହିରେ ବି ପୁନଃମୁଦ୍ରିତ ହୋଇଛି । ପ୍ରକାଶନର ଉଦ୍ଦେଶ୍ୟ ବା ଲକ୍ଷ୍ୟକୁ ବହୁମୁଖୀ କରିବା ପାଇଁ ଏପରି ହୋଇଥିବାର ଅନୁମାନ କରାଯାଏ । ସେ ଧାଡ଼ି ଧାଡ଼ି କରି ବା ପରିଚ୍ଛେଦବ୍ୟାପୀ ଭାଷାର ବିଶ୍ଳେଷଣ କରିନାହାନ୍ତି ବରଂ ତାଙ୍କ ଚିନ୍ତାଧାରାକୁ ସେ କେବଳ ସୂତ୍ରାୟିତ କରିଛନ୍ତି । କେତୋଟି ଲେଖାରେ ଏହାର ବ୍ୟତିକ୍ରମ ଅବଶ୍ୟ ଅଛି; କିନ୍ତୁ ବିଶ୍ଳେଷଣ ଅପେକ୍ଷା ସୂତ୍ରାୟିତ କରିବାରେ ତାଙ୍କର ନିଷ୍ଠା ଯେ ଅଧିକ; ଏହା ତାଙ୍କର ବହୁ ଲେଖାରେ ପରିସ୍ଫୁଟିତ ହୋଇଛି । ତେବେ ତାଙ୍କର ବହିଗୁଡ଼ିକ ନୂଆ ଇସ୍ପାତ ପରି ବଳାଏ ଧାର । ନୂଆ ଇସ୍ପାତ ଟିକେ ଦେହରେ ବାଜିଗଲେ ଯେ କେହି ସଚେତନ ହେବା ପରି ଏହି ବହିଗୁଡ଼ିକ ପଢ଼ିଲେ ଯେ କେହି ଓଡ଼ିଆ ଭାଷାର ବ୍ୟବହାର କ୍ଷେତ୍ରରେ ସଚେତନ ହୋଇ ପାରିବେ, ଏହାର ସମ୍ଭାବନା ବହୁତ ।

ସମ୍ବଲପୁରି ଭାଷା ପ୍ରସଙ୍ଗରେ ଡକ୍ଟରେଟ୍ କରିଥିବା ତ୍ରିପାଠୀ ସମ୍ବଲପୁରି ଓ ଓଡ଼ିଆ ଭାଷାର ଭାଷାତାତ୍ତ୍ୱିକ ଦିଗକୁ ବହୁଭାବରେ ସମୃଦ୍ଧ କରିଆସୁଛନ୍ତି । ଗଣମାଧ୍ୟମର ଭାଷାନୀତି ନିର୍ଦ୍ଧାରଣ, ଶୁଦ୍ଧ ଲିଖନ, ଓଡ଼ିଆ ବନାନକୁ ସରଳ ଓ ଲୋକାଭିମୁଖୀ କରିବା କ୍ଷେତ୍ରରେ ସଂସ୍କାରଧର୍ମୀ କାର୍ଯ୍ୟକଳାପ ପାଇଁ ସେ ବିଶେଷ ପରିଚିତ । ପିଲାମାନଙ୍କୁ ବର୍ଣ୍ଣ ଲେଖି ଶିଖାଇବା ତତ୍ତ୍ୱଟି ତାଙ୍କର ଟିକିଏ ନିଆରା । ତାହା 'ଅ' ରୁ ଆରମ୍ଭ ନ କରି 'ଠ'ରୁ ଆରମ୍ଭ କରି 'ଠ'ରୁ ଜାତ ବର୍ଣ୍ଣ ଯଥା: ଚ, ଟ, ଗ, ର, ଛ ଆଦି ଶିଖବା ପରେ ମାତ୍ରା, ଫଳା ଆଦି ଶିଖିଲେ ବର୍ଣ୍ଣ ଶିକ୍ଷା ସହଜ ହେବାର ପ୍ରଣାଳିକୁ ପରୀକ୍ଷା କରାଯାଇପାରେ ।

ଭାଷାର ବିଭିନ୍ନ ପ୍ରସଙ୍ଗ ଉଲ୍ଲେଖ ବେଳେ ସେ କେତୋଟି ନୂଆ ପରିଭାଷା ସ୍ଥାନ ଦେଇଛନ୍ତି । କିଛି କିଛି ଶବ୍ଦ ଅଛି ; ଯାହାକୁ ପାଠକେ ବୁଝିବାରେ ଟିକିଏ ହଡ଼ବଡ଼େଇ ଯାଆନ୍ତି; ସେହି ଶବ୍ଦଗୁଡ଼ିକର ନୂଆ ନାମକରଣ କରିଛନ୍ତି ସେ । ଯଥା : ମାତ୍ରା, ଫଳା ଆଦି ବଦଳରେ ସ୍ୱର ଚିହ୍ନ, ବ୍ୟଞ୍ଜନ ଚିହ୍ନର ନାମକରଣ । ଆହୁରି ଏହିଭଳି କିଛି ଶବ୍ଦ ଓ ଶବ୍ଦପୁଞ୍ଜର ସୂଚନା :-

**ଅନକ୍ଷର :** କୌଣସି ଧ୍ୱନିର ପ୍ରତୀକ ନ ହୋଇ ସୁଦ୍ଧା ଲିପିମାଳାରେ ସ୍ଥାନିତ । ଯଥା – ଗାଣିତିକ ସଂଖ୍ୟା, ବିରାମ ଚିହ୍ନ, ସ୍ୱର – ବ୍ୟଞ୍ଜନ ଚିହ୍ନ (୧, -,।, ୍) ଇତ୍ୟାଦି ।

**ଆଦିବୃଦ୍ଧି :** ଇକ,ୟ ଭଳି ପ୍ରତ୍ୟୟ ଯୋଗରେ ଶବ୍ଦର ଆଦ୍ୟ ବର୍ଣ୍ଣ ପରିବର୍ତ୍ତନ । ଯଥା :- ସମାଜ+ଇକ = ସାମାଜିକ, ତରୁଣ+ୟ = ତାରୁଣ୍ୟ ଇତ୍ୟାଦି ।

**କଙ୍ଗାରୁ ଯୁକ୍ତାକ୍ଷର :** ବଡ଼ ଅକ୍ଷର ତଳେ ଛୋଟ ଅକ୍ଷର ଥାଇ ଯୁକ୍ତାକ୍ଷର । ଯଥା : କ୍ସ, କ୍ଟ ଆଦି । କଙ୍ଗାରୁ ତା ଛୁଆକୁ ପେଟରେ ଧରିବା ପରି ଏହି ଯୁକ୍ତାକ୍ଷରଗୁଡ଼ିକ ପ୍ରାୟ ସେପରି ଦେଖାଯାଉଥିବାରୁ ଏପରି ନାମକରଣ କରିଥିବାର ଅନୁମାନ ।

**ବନ୍ଧାକ୍ଷର :** ଶବ୍ଦର ମଝି ବା ଶେଷବର୍ଣ୍ଣରେ ସୂଚିତ 'ହଳନ୍ତ' ଯୁକ୍ତ ବର୍ଣ୍ଣ । ଯଥା – ଠିକ୍, ଦେଖ୍ ଇତ୍ୟାଦି । ଶେଷ ବର୍ଣ୍ଣରେ ହିଁ ଶବ୍ଦଟି ବାନ୍ଧି ହୋଇଯାଉଥିବାରୁ ଏପରି ନାମକରଣ ହୋଇଛି ବୋଲି ତାଙ୍କର ମତ ।

**ମୁକ୍ତାକ୍ଷର :** ଯେଉଁ ଅକ୍ଷରରେ ସ୍ୱରଧ୍ୱନି ସୂଚିତ ହୁଏ ବା ସ୍ୱରଚିହ୍ନ ଲାଗିଥିବା ସମସ୍ତ ଅକ୍ଷର ହେଉଛି ମୁକ୍ତାକ୍ଷର । ଯଥା : ଖା, ପି, ଦେ । ଉଚ୍ଚାରଣ ବେଳେ ମୁକ୍ତାକ୍ଷରକୁ ମୁକ୍ତ ଓ ଦୀର୍ଘତର କରିହେବ । ଯଥା : ଖାଆଆଆ... ।

ଏହିପରି ଆଉ ଅଧିକ ପାଞ୍ଚଟି ଶବ୍ଦ ସଂପର୍କିତ ଏହି ଅଧ୍ୟାୟରେ ପୂର୍ବରୁ ସୂଚିତ 'ଅନକ୍ଷର' ବହିର ପରିଚୟରେ ଆପଣ ପଢ଼ିସାରିଥିବେ । ଆହୁରି ଅଧିକ ବ୍ୟାଖ୍ୟା ଜାଣିବା ପାଇଁ ଆପଣ 'ବ୍ୟାକରଣ କୋଷ' ଓ 'ଅନକ୍ଷର' ବହି ପଢ଼ିପାରନ୍ତି । ତେବେ ଏପରି ଶବ୍ଦ ମାଧ୍ୟମରେ ସେ ଯେପରି ବୁଝାଇବାକୁ ଚେଷ୍ଟା କରିଛନ୍ତି ; ତାହା ଅନେକଙ୍କୁ ବୁଝିବାରେ ସ୍ପଷ୍ଟ ହେବ ବୋଲି ଆଶା କରାଯାଏ ।

ବାଟ-ଘାଟରୁ ଶୁଣୁଥିବା ଶବ୍ଦଗୁଡ଼ିକ ତାଙ୍କର ଏହି ବହୁମୁଖୀ ଭାଷା-ଭାବନାର ଚେର ବୋଲି ମୁଁ ମନେକରେ । ଏଥିପାଇଁ ଆଖିଯୋଡ଼ାକ ଠାରୁ କାନ ହଳକ ଉପରେ ସେ ବେଶୀ ବିଶ୍ୱାସୀ । ଭାଷାବିତ୍‌ଙ୍କ ପାଇଁ ପଢ଼ିବା ଯେତିକି ଆବଶ୍ୟକ ତାହାଠୁ ବେଶି ଆବଶ୍ୟକ ଶୁଣିବା ; ଡକ୍ଟର୍ ତ୍ରିପାଠୀ ହେଉଛନ୍ତି ଉଭୟର ଏକ ଉଦାହରଣ । ତେବେ ତାଙ୍କର ଏତେସବୁ ଭାଷା-ଭାବନାରେ ସାହିତ୍ୟକଳା ଟିକକର ପ୍ରଭାବକୁ ମଧ୍ୟ ସ୍ୱୀକାର କରିବାକୁ ପଡ଼େ ।

ଓଡିଆ ଲିପିକୁ କଂପ୍ୟୁଟର ବା ଯନ୍ତ୍ର ଉପଯୋଗୀ କରିବାରେ ତାଙ୍କର ନିରନ୍ତର ଚେଷ୍ଟା ପ୍ରଶଂସନୀୟ । ସବୁବେଳେ ଭାଷା ପାଇଁ ନୂଆ ଢଙ୍ଗରେ କାମ କରିବା ଚିନ୍ତାରେ ତାଙ୍କ ଆଗରେ ଅନେକ କାମ । ଶବ୍ଦଗୁଡ଼ିକୁ ନାକେଦମ୍ କରିବାରେ ତାଙ୍କର ବହୁ ଆନନ୍ଦ । ଘରେ ଚାରିଆଡ଼େ ଖାଲି ଶବ୍ଦର ତାଲିକା । ଯେତେ ଭେରାଇଟିଆ ଶବ୍ଦ ହେଉ ପଛେ ସେସବୁ ତାଙ୍କ ଶବ୍ଦ-ଫାଶରେ ଛନ୍ଦିହେବାକୁ ବାଧ୍ୟ । ସେସବୁକୁ ରୂପ ଦେବାରେ ତାଙ୍କର ହରଦମ୍ ଲେଖାଲେଖି । ସେଥିପାଇଁ ଈଶ୍ୱର ତାଙ୍କୁ ଆହୁରି ଦୁଇଶହ ବର୍ଷ ଆୟୁଷ ଦିଅନ୍ତୁ । ❑

# ପ୍ରଫୁଲ୍ଲ ଭାବକୋଷ

## ଭୂମିକା

ଭାଷାର ବିଭିନ୍ନ ପ୍ରସଂଗରେ ପ୍ରଫୁଲ୍ଲ କୁମାର ତ୍ରିପାଠୀଙ୍କ ଭାବନା ବା ଚିନ୍ତାକୁ ଏଠାରେ ଅଭିଧାନ ରୀତିରେ ଉପସ୍ଥାପିତ କରାଯାଇଛି । ତ୍ରିପାଠୀଙ୍କ ମୁଦ୍ରିତ ପାଠରୁ ଉଦ୍ଧୃତ ହୋଇଥିବା ତଳ ଲିଖିତ ମନ୍ତବ୍ୟଗୁଡ଼ିକରୁ ତାଙ୍କର ଭାଷା ପ୍ରତି ସଂବେଦନଶୀଳତା ଓ ମନନଶୀଳତାକୁ ପାଠକେ ଲକ୍ଷ୍ୟ କରିପାରିବେ । ପ୍ରତି ବକ୍ତବ୍ୟର ଆରମ୍ଭରେ ମୋଟା କାଳିରେ ଲେଖାଯାଇଥିବା ଶିରୋନାମା ଏଠାରେ ଉଦ୍ଧୃତ ହୋଇଥିବା ତାଙ୍କ ବକ୍ତବ୍ୟକୁ ଭିତ୍ତି କରି ଲେଖାଯାଇଛି । ବକ୍ତବ୍ୟ ଶେଷକୁ ବହିର ନାମ ସଂକେତ ମାଧ୍ୟମରେ ଦର୍ଶାଯାଇଛି । ବକ୍ତବ୍ୟ ମଝିରେ ଯେଉଁଠି ତିନିଟି ବିନ୍ଦୁ (...) ଉଲ୍ଲେଖ ଅଛି, ବୁଝିବାକୁ ହେବ ଯେ, ସେହି ପାଠର କିଛି ଅଂଶ ଏଠାରେ ପ୍ରସଂଗ ଦୃଷ୍ଟିରୁ ଅତି ଆବଶ୍ୟକ ମନେ ନ ହେବାରୁ ତାହା ଉଲ୍ଲେଖ କରାଯାଇନାହିଁ ।

- ସନ୍ତୋଷ କୁମାର ମହାନ୍ତି

ଭାବକୋଷରେ ବ୍ୟବହୃତ ସଂକେତର ଅର୍ଥ(ବହିର ନାମ) :

ଇ.ଭା.ସ.= ଇଟିଭି ଭାଷା ସହଚର

ଓ.ଉ. = ଓଡ଼ିଆ ଉଚ୍ଚାରଣ

ଓ.ବ.ଧା. = ଓଡ଼ିଆ ବନାନ ଧାରା

ଓ.ମା.ଫ. = ଓଡ଼ିଆ ମାତ୍ରା ଓ ଫଳା

ବ୍ୟା.କୋ. = ବ୍ୟାକରଣ କୋଷ

ଭା.ଭା. = ଭାଷା ଭାବନା('ସମ୍ବାଦ'ରୁ ସଂଗ୍ରହ)

ଭା.ଭା.ପ୍ର.= ଭାଷା ଭାବନା(ପ୍ରଥମ ଭାଗ)

**ଅଣଓଡ଼ିଆ ଭାଷା:** ଓଡ଼ିଆ ପରିବାରରେ ଜନ୍ମ ହୋଇ ସୁଦ୍ଧା ଓଡ଼ିଆ ଶିଶୁ ଅନେକ ପ୍ରକାର ଅଣ-ଓଡ଼ିଆ ଖାଦ୍ୟ (ଇଡ୍‌ଲି, ଚାଓମିନ୍, ପିଜା, କେକ୍, ବିସ୍‌କୁଟ୍) ନିୟମିତ ଖାଏ ଏବଂ ଅନେକ ଅଣଓଡ଼ିଆ ଭାଷା (ହିନ୍ଦୀ, ସଂସ୍କୃତ, ଇଂଲିଶ) ଶିଖେ । ଓ.ଉ. ।

**ଅଣଓଡ଼ିଆ ଶବ୍ଦ:** ଓଡ଼ିଆ ଭାଷାରେ ଚଳୁଥିବା ଶବ୍ଦଗୁଡ଼ିକ ଓଡ଼ିଆ ବ୍ୟାକରଣରେ ପ୍ରଚଳିତ ସୂତ୍ରାଧୀନ ହୋଇରହିବେ । ଯେମିତି ଭାରତୀୟମାନେ ବିଦେଶକୁ ଗଲେ ସେହି ଦେଶର ନିୟମ ମାନି ଚଳିବେ ଏବଂ ବିଦେଶରୁ ଯେଉଁମାନେ ଭାରତକୁ ଆସିବେ ସେମାନଙ୍କୁ ଭାରତର ନିୟମ ମାନିବାକୁ ପଡ଼ିବ । ଭା.ଭା. ।

**ଅବ୍ୟବହୃତ ଶବ୍ଦ:** ସଂଗ୍ରହାଳୟରେ ଖଣ୍ଡା, ଢାଲ ଭଳି ଅବ୍ୟବହାର୍ଯ୍ୟ ବସ୍ତୁ ଥିଲା ଭଳି, ବଡ଼ ବଡ଼ ଶବ୍ଦକୋଷରେ ଅନେକ ଅବ୍ୟବହୃତ ଓ ଅବ୍ୟବହାର୍ଯ୍ୟ ଶବ୍ଦ ଥିବାର ଦେଖାଯାଏ । ଈ.ଭା.ସ. ।

**ଅଭିଧାନ:** ୧. ଯେତେ ଭଲ ଅଭିଧାନ ହୋଇଥିଲେ ସୁଦ୍ଧା, ଭାଷା ଯେହେତୁ ଅହରହ ପରିବର୍ତ୍ତନଶୀଳ, ତହିଁର ପୁନଃମୁଦ୍ରଣ ସମୀଚୀନ ନୁହେଁ । ଓ.ଉ. ।

୨. ଅଭିଧାନ ପ୍ରଣୟନ ବେଳେ ଟିକିଏ ଅସାବଧାନ ହେଲେ ଯୁଗ ଯୁଗ ଧରି ଭୁଲ୍ ରହିଯିବାର ସମ୍ଭାବନା । ('ସମଲ୍‌ପୁରୀ ଶବ୍‌ଦ-ସୂଚୀ'ରୁ ସଂଗ୍ରହ ।)

**ଅଭିଧାନ ଓ ଭାଷାପ୍ରୀତି:** ଯେଉଁମାନେ ଜୀବନରେ ସମୟର ମୂଲ୍ୟ ବୁଝନ୍ତି ନାହିଁ, ସେମାନଙ୍କୁ ଘଣ୍ଟା ଯୋଗାଇ ଦିଆଯାଇପାରେ । କିନ୍ତୁ ସେଥିଯୋଗୁଁ ଯେ ସେମାନେ ସମୟାନୁଯାୟୀ କାର୍ଯ୍ୟ କରିବେ - ଏ କଥା ତ ଆଦୌ କହିହେବନାହିଁ । ପ୍ରାୟ ସେହିପରି ଲକ୍ଷ ଲକ୍ଷ ସଂଖ୍ୟାରେ ଅଭିଧାନ ଛାପି ସବୁ ବିଦ୍ୟାଳୟ ଓ କାର୍ଯ୍ୟାଳୟରେ ରଖାଯାଇପାରେ । କିନ୍ତୁ ସେଥିଯୋଗୁଁ ଯେ ଛାତ୍ର, ଶିକ୍ଷକ, କର୍ମଚାରୀମାନଙ୍କର ଓଡ଼ିଆ ଭାଷାପ୍ରୀତି ହଠାତ୍ ବଢ଼ିଯିବ - ଏ କଥା ଆଦୌ କହିହେବନାହିଁ । ଭା. ଭା. ।

**ଅଭିଧାନ ଓ ସାହିତ୍ୟ:** ଅଭିଧାନର ସହାୟତା ନ ପାଇ ଶାରଳା ଦାସ, ଜଗନ୍ନାଥ ଦାସ, ଦୀନକୃଷ୍ଣ, ଅଭିମନ୍ୟୁ ଯେଉଁ ସ୍ତର ଓ ମାନର ସାହିତ୍ୟ ଛାଡ଼ି ଯାଇଛନ୍ତି, ସେ ସବୁ ସହିତ ତୁଳନୀୟ ହେଲାଭଳି କିଛି ଅଭିଧାନସୁଲଭ ହେବା ସମୟରେ ଲେଖା ହୋଇଛି କି ? ଭା. ଭା. ।

**ଅଶୁଦ୍ଧ ବନାନ:** ରୁପା ଥାଳିଆରେ ଅଖାଦ୍ୟ ବାଢ଼ିଦେବା ଯାହା, ମୋଟା, ଚିକ୍କଣ, ମୂଲ୍ୟବାନ କାଗଜରେ ଅଶୁଦ୍ଧ ଲେଖା ମୁଦ୍ରଣ କରିବା ମଧ୍ୟ ତାହା । ଭା.ଭା. ।

**ଇଂଲିଶ୍ ବନାମ ଓଡ଼ିଆ :** ଯେଉଁମାନେ ପ୍ରାଶାସନିକ କାର୍ଯ୍ୟ ନିମନ୍ତେ ଇଂଲିଶ୍ ଭାଷା ସହଜ ଓ ଓଡ଼ିଆ ଭାଷା କଠିନ ବୋଲି ଯୁକ୍ତି କରନ୍ତି, ସେମାନଙ୍କର ଇଂଲିଶ୍ ଯେ ତ୍ରୁଟିଶୂନ୍ୟ ଏ କଥା କହିହେବନାହିଁ । ତ୍ରୁଟିପୂର୍ଣ୍ଣ ଇଂଲିଶ୍ ପଛକେ ଲେଖି ଚାଲିଥିବା, ନିଜର ମାତୃଭାଷା ବ୍ୟବହାର କରିବାନାହିଁ ବୋଲି ବିଚାରୁ ଥିବା ଲୋକଟିକୁ କେବଳ ଦୟା ହିଁ କରାଯାଇପାରେ । ଭା.ଭା.ପ୍ର. ।

**ଉପଭାଷା :** ଉପଭାଷାର ପ୍ରୟୋଗ - ବିସ୍ତାର ଘଟିଲେ ତାହା ଭାଷା ପାଲଟି ଯାଏ ଏବଂ ଭାଷାର ପ୍ରୟୋଗ - ସଂକୋଚନ ଘଟିଲେ ତାହା ଉପଭାଷା ପାଲଟି ଯାଏ । ଏଣୁ ଯେଉଁ ସ୍ତରରେ ଗୋଟିଏ ଭାଷା ଓ ଅନ୍ୟଟିକୁ ଉପଭାଷା ନାମିତ କରାଯାଏ, ତାହା ସର୍ବଜନଗ୍ରାହ୍ୟ କିଂବା ସର୍ବକାଳୀନ ନୁହେଁ । ବ୍ୟା.କୋ. ।

**ଓଡ଼ିଆ ଭାଷା :** ମନେ ହେଉଛି ସତେ ଯେମିତି ଆମ ଭାଷା ଗୋଟେ ନୂଆ ପ୍ରକାର ପର୍ଦ୍ଦା ପ୍ରଥାର ଶିକାର ହୋଇପଡ଼ିଛି । ଏକଦା ନାରୀମାନଙ୍କୁ ଯେମିତି ଘର କୋଣରେ ଲୁଚାଇ ରଖାଯାଉଥିଲା, ଏବେ ଓଡ଼ିଆ ଭାଷାକୁ ସେମିତି ଲୁଚାଇ ରଖାଯାଉଛି । ଭା.ଭା ।

**ଓଡ଼ିଆ ଭାଷାର ଅନ୍ତରାୟ :** ଭୌଗୋଳିକ ଅବସ୍ଥାନ ଦୃଷ୍ଟିରୁ ଓଡ଼ିଆ ଭାଷା ହିନ୍ଦୀ, ବାଂଗଲା ଓ ତେଲୁଗୁ ଭଳି ତିନୋଟି ସମୃଦ୍ଧି ଭାଷା ଦ୍ୱାରା ପରିବେଷ୍ଟିତ । ତେବେ ସୁଦ୍ଧା ଓଡ଼ିଆ ଭାଷାର ସ୍ଥିତି ଏ ସଂଖ୍ୟାତ୍ମକ ବହୁଳତା ଓ ବୈଶିଷ୍ଟ୍ୟମଣ୍ଡିତ ସାହଚର୍ଯ୍ୟ ଯୋଗୁଁ ପରିବର୍ତ୍ତିତ ହୋଇନାହିଁ । ଅତୀତାସକ୍ତି ଓ ପରିବର୍ତ୍ତନ-ବିମୁଖତା ଏ ଭାଷାର ଦୁଇଟି ପ୍ରଧାନ ଅନ୍ତରାୟ । ଭା.ଭା.ପ୍ର. ।

**ଓଡ଼ିଶା ଦିବସ :** ବର୍ଷଯାକର ଅନ୍ୟ ସବୁଦିନ ଜଂଗଲ ନାଶ, ବିଦ୍ୟା ବିନାଶ ଓ ସଂପତ୍ତି ଧ୍ୱଂସ ଭଳି କାର୍ଯ୍ୟକଳାପରେ ଲିପ୍ତ ରହି, କେବଳ ଗୋଟିଏ ଦିନକୁ 'ବନ ମହୋତ୍ସବ', 'ସରସ୍ୱତୀ ପୂଜା' ଓ 'ମିତବ୍ୟୟିତା ଦିବସ' ରୂପେ ପାଳନ କରିବା ଯେପରି ନିରର୍ଥକ, ଆପଣା ମଧ୍ୟରେ ଓଡ଼ିଆତ୍ୱର ଲାଳନପାଳନ ଓ ସଂରକ୍ଷଣ ବ୍ୟବସ୍ଥା ନ କରି କେବଳ ଗୋଟିଏ ଦିନକୁ 'ଓଡ଼ିଶା ଦିବସ' ରୂପେ ପାଳନ କରିବା ସେହିପରି ହାସ୍ୟାସ୍ପଦ । ଭା.ଭା.ପ୍ର. ।

**ଓଡ଼ିଶାରେ ଓଡ଼ିଆ :** ଓଡ଼ିଶାର ପୁରପଲ୍ଲୀ, ଗଡ଼, ନଗର ସବୁଆଡ଼େ କାନ୍ଥରେ ଫଳକରେ, ପଟାରେ, କନାରେ, କାଗଜରେ ଯେଉଁ ଭାଷା ସବୁଠାରୁ

ଅଧିକ ଦିଶେ ତାହା ଆଦୌ ଓଡ଼ିଆ ନୁହେଁ । ଓଡ଼ିଶାରେ ଓଡ଼ିଆ ଭାଷା ବିଶେଷ ଦିଶେନାହିଁ । ଭା.ଭା.ପ୍ର. ।

**କଥିତ ଭାଷା:** ସ୍ୱାଭାବିକ ଭାବରେ, ବିନା ପୂର୍ବ ପ୍ରସ୍ତୁତିରେ ଲୋକମାନେ ପରସ୍ପର ମଧ୍ୟରେ ଭାବ ବିନିମୟ ବା ସୂଚନା ଆଦାନ ପ୍ରଦାନ କରିବା ନିମନ୍ତେ ଯେଉଁ ଶବ୍ଦ, ବାକ୍ୟାଂଶ, ବାକ୍ୟ ଉଚ୍ଚାରଣ କରନ୍ତି ତାହା ହିଁ କଥିତ ଭାଷା । ବ୍ୟା. କୋ. ।

**ଖବରକାଗଜର ଭାଷା:** ୧. ରେଡିଓ ଓ ଟିଭିରୁ ଶୁଣିଥିବା କଥାକୁ ଅବିକଳ ଛାପିଦେଲେ ତାହା ଖବରକାଗଜର ଭାଷା ହୋଇଯାଏନାହିଁ । ଓ. ଉ. ।

୨. ଖବରକାଗଜ ଓ ପାଠ୍ୟପୁସ୍ତକ ସବୁ ଏଭଳି ଲେଖା ହେବା ଆବଶ୍ୟକ ଯେମିତିକି ଆଖିରେ ପଢ଼ିଲା ବେଳେ କାନରେ ଶୁଣିଲା ଭଳି ଲାଗୁଥିବ । ଏପ୍ରକାର ଭାଷା ହିଁ ଅଧିକ ଲୋକଙ୍କର ପ୍ରିୟ ହୋଇପାରିବ । ଭା.ଭା.ପ୍ର. ।

**ଖାଇବା ଓ କହିବା:** ଓଡ଼ିଶାର ରାଜନୈତିକ ବିଚାରରେ ଓଡ଼ିଶାର ଲୋକ ଯେହେତୁ ଗରିବ, ସେମାନେ ସର୍ବଦା ଖାଦ୍ୟ ପ୍ରାପ୍ତି ଆଶାରେ ଆଁ କରି ଅନାଇ ରହିଥାନ୍ତି । ମନୁଷ୍ୟର ପାଟି ଦୁଇଟି କାର୍ଯ୍ୟ କରିଥାଏ: ଖାଇବା ଓ କହିବା । ଓଡ଼ିଆ ମଣିଷର ଖାଇବା ଅଧିକାରକୁ ଆଳ କରି କ୍ଷମତା-ବଳୟ ମଧ୍ୟରେ ଆତଯାତ ହେଉଥିବା ରାଜନୀତିଆମାନେ ଓଡ଼ିଆର କହିବା ଅଧିକାରକୁ କ୍ରମାଗତ ଭାବରେ ଖର୍ଚ୍ଚ କରି ଚାଲିଥିବା ଯୋଗୁଁ ତାର ସ୍ୱାଭିମାନ ଜାଗ୍ରତ ହୋଇପାରୁ ନାହିଁ । ଭା.ଭା.ପ୍ର. ।

**ଗାଁ ଲୋକଙ୍କ ଭାଷା:** ଉଚ୍ଚ ଶିକ୍ଷିତ ବିତ୍ତଶାଳୀ ଓଡ଼ିଆମାନଙ୍କର ଅବହେଳା ସହି ସୁଦ୍ଧା ଯେ, ଓଡ଼ିଆ ଭାଷା ଏ ପର୍ଯ୍ୟନ୍ତ ଲୁପ୍ତ ହୋଇନାହିଁ ଏଥି ସକାଶେ ଆମ୍ଭେମାନେ ଏ ରାଜ୍ୟର ଅଳ୍ପ ଶିକ୍ଷିତ ଓ ଅଶିକ୍ଷିତ ଗ୍ରାମବାସୀ ଜନସାଧାରଣଙ୍କ ନିକଟରେ କୃତଜ୍ଞ ହେବା ଉଚିତ । କାରଣ ସେମାନଙ୍କୁ ଅନ୍ୟ କୌଣସି ଭାଷା ଆଦୌ ଜଣା ନ ଥିବା ହେତୁ ସେମାନେ ସର୍ବଦା ଓଡ଼ିଆ ଭାଷା ହିଁ ବ୍ୟବହାର କରିଥାନ୍ତି । ଓଡ଼ିଶାରେ ଯାହାକୁ ଦୁଇଧାଡ଼ି ଇଂଲିଶ୍ ଲେଖି ଆସେ, ସାଧାରଣତଃ ସେ ଓଡ଼ିଆ ଲେଖିବାକୁ ଅନିଚ୍ଛା ପ୍ରକାଶ କରିଥାଏ । ତେଣୁ 'କେବଳ ଓଡ଼ିଆ' ଜାଣିଥିବା ଲୋକଙ୍କ ଯୋଗୁଁ ହିଁ ଏ ପର୍ଯ୍ୟନ୍ତ ଓଡ଼ିଶାରେ ଓଡ଼ିଆ ଭାଷା ବଂଚି ରହିଛି । ଭା.ଭା.ପ୍ର. ।

**ଦ୍ୱିତ୍ୱ ବର୍ଣ୍ଣ:** ଦ୍ୱିତ୍ୱଯୁକ୍ତ ବର୍ଣ୍ଣକୁ ବନାନ୍ ବଦଳାଇ ଲେଖିଲେ ପ୍ରଥମେ ଅଭ୍ୟାସରେ ପଡ଼ିଯିବା ପର୍ଯ୍ୟନ୍ତ ଅଡୁଆ ଦିଶିପାରେ, ଯେମିତି ଜଣେ ନିଶୁଆ ଲୋକ ହଠାତ୍ ନିଶ

କାଟିଦେଲେ ଅଡୁଆ ଦିଶେ । ଭା.ଭା. । [ ଏହି ବକ୍ତବ୍ୟର ପ୍ରଥମ ପାଞ୍ଚଟି ଶବ୍ଦ/ ପଦ ପ୍ରସଙ୍ଗ କ୍ରମେ ଏଠାରେ ଯୋଗ ହୋଇଛି । ]

**ଧ୍ୱନି ଓ ଲିପି:** ଧ୍ୱନି ମାଧ୍ୟମଟି ଭାଷା-ନିର୍ଭର ନୁହେ । ଯେ କୌଣସି ଭାଷାର ଲୋକେ ଟେଲିଫୋନ୍, ରେଡିଓ, ଟେଲିଭିଜନ, ଚଳଚ୍ଚିତ୍ର ମାଧ୍ୟମରେ ଆପଣା ଭାଷା ବ୍ୟବହାର କରିପାରଂତି । କିଂତୁ ଲିପି-ନିର୍ଭର ବୈଷୟିକ କୌଶଳଗୁଡ଼ିକର ପ୍ରୟୋଗ ଏ ପର୍ଯ୍ୟଂତ ପାଶ୍ଚାତ୍ୟ (ମୁଖ୍ୟତଃ ରୋମାନ୍) ଲିପି ଜରିଆରେ ହୋଇ ଆସୁଛି । ଭା.ଭା.ପ୍ର. ।

**ନାମ ଉଚ୍ଚାରଣ:** 'ଅଂବେଡ୍‌କର, ଟେଂଡୁଲ୍‌କର, ଚହ୍ୱାଣ' ଭଳି ନାମକୁ ଆମେ ବାରଂବାର 'ଅାଂବେଦକର, ଟେଂଦୁଲକର, ଚୌହାନ' କରି ଚାଲିଛୁଁ; ଅଥଚ ଆମକୁ 'ଓରିଆ, ଉଡ଼ିଆ' କହିଲେ ଚିହିଁକି ଉଠୁଛୁଁ । ଓ.ଉ. ।

**ନିୟମ ବାହାରର ଶବ୍ଦ:** ଆମର ସାମାଜିକ ଜୀବନରେ ଯେପରି କେତେକ ପ୍ରଭାବଶାଳୀ ବ୍ୟକ୍ତି ବିଭିନ୍ନ ପ୍ରକାର ନିୟମ କାନୁନ ଭଂଗ କରି ସୁଦ୍ଧା ଆଦୌ ଦଂଡିତ ହୁଅନ୍ତି ନାହିଁ, ଭାଷାରେ ମଧ୍ୟ ସେହିପରି କେତେକ ନିୟମ-ବହିର୍ଭୂତ ଶବ୍ଦ ସୁପ୍ରଚଳିତ ଥିବାର ଆମେ ଦେଖୁଁ । ଭା.ଭା. ।

**ପଂଡା, ପଂଡିତ:** ୧. 'ପୁଂଲିଂଗ, ପୁଂକେଶର, ପୁଂଗବ, ପୁଂସବନ, ନପୁଂସକ' ଭଳି ସୁପ୍ରଚଳିତ ଶବ୍ଦଗୁଡ଼ିକୁ କେହି 'ପୁଲିଂଗ, ପୁକେଶର, ପୁଗବ, ପୁସବନ, ନପୁସକ' କହୁଥିବାର ଶୁଣାଯାଏନାହିଁ । 'ପଂଡିତ, ପଂଡା' ଭଳି ଲେଖାକୁ 'ପଡ଼ିତ, ପଡ଼ା' କହି ହାଲୁକା ଥଟ୍ଟା କରିବା ଗୋଟିଏ କଥା ଏବଂ ଅନୁସ୍ୱାରର ଉପଯୋଗିତାକୁ ଅସ୍ୱୀକାର କରିବା ଆଉ ଗୋଟିଏ ଭିନ୍ନ କଥା । ଓ.ମା.ପ. ।

୨. 'ଫଂଗୁ' ସ୍ଥଳେ 'ଫଗୁ', 'ଫିଂକା' ସ୍ଥଳେ 'ଫିକା' ପଢ଼ିବା ଭଳି ଭୁଲ୍ କେହି କେହି ହୁଏତ କରିପାରଂତି କିଂତୁ 'ପଂକଜ, ପଂକ୍ତି,ପଂଚମ, ପଂଜିକା, ପଂଝା, ପଂଡିତ, ପଂଥା', ଭଳି ଶବ୍ଦକୁ 'ପକଜ, ପକ୍ତି, ପଚମ, ପଝା, ପଡ଼ିତ, ପଥା' ବୋଲି ପଢ଼ିବା ବ୍ୟକ୍ତି ହୁଏତ ଆଦୌ ଓଡ଼ିଆ ନୁହଂତି । ଭା.ଭା.ପ୍ର. ।

**ବନାନ ଜ୍ଞାନ:** ହାତରେ ଘଡ଼ି ବାଂଧିଲେ ଯେପରି କେହି ସ୍ୱତଃ ସମୟାନୁବର୍ତୀ ହୋଇଯାଏନାହିଁ, ସେହିପରି ଜନଗଣନା ତାଲିକାରେ ଯାହାର ମାତୃଭାଷା 'ଓଡ଼ିଆ' ବୋଲି ଲେଖାହୋଇଥାଏ, ତାହାର ବନାନ ଜ୍ଞାନ ସ୍ୱତଃ ପରିପୁଷ୍ଟ ହୋଇଯାଏ ନାହିଁ । ଭା. ଭା. ।

**ବିଜ୍ଞାପନର ଭାଷା :** କେବଳ ଲୋଭନୀୟ ପାଉଣା ପାଉଥିବା ଯୋଗୁଁ ଆମର ଖବରକାଗଜ ଓ ପତ୍ରିକାଗୁଡ଼ିକ ବିନା ପ୍ରତିବାଦରେ ତ୍ରୁଟିପୂର୍ଣ୍ଣ ବିଜ୍ଞାପନଗୁଡ଼ିକୁ ପ୍ରତି ସଂଖ୍ୟାରେ ଛାପି ଚାଲିଛନ୍ତି । ଖବରକାଗଜ ବା ପତ୍ରିକା ପୃଷ୍ଠାରେ ସ୍ଥାନ କିଣୁଥିବା ସଂସ୍ଥା କଅଣ ଆମ ଭାଷାକୁ ବିକୃତ କରିବା ପାଇଁ ହକ୍‌ଦାର ?

**ବ୍ୟାକରଣ :** ଗୋଟିଏ ଭାଷାର ବ୍ୟାକରଣକୁ ସେହି ଭାଷାର ସଂବିଧାନ ନ କହି ମାନଚିତ୍ର କହିବା ଯଥାର୍ଥ ମନେ ହୁଏ । ବ୍ୟା. କୋ. ।

**ବ୍ୟାକରଣକାର :** ବ୍ୟାକରଣ ଲେଖକ ଭାଷାକୁ ଚଳାଂତିନାହିଁ । ଗୋଟିଏ ଚଳଂତି ଭାଷାର ପଦ୍ଧତିକୁ ସେ କେବଳ ଅଧ୍ୟୟନ ଓ ବିଶ୍ଳେଷଣ କରଂତି । ଭାଷାରେ ଯାହା ଅଯୌକ୍ତିକ, ତାହା ଦେଖେଇଦେବା ପରେ ପରେ ତାଂକର କର୍ତବ୍ୟ ଶେଷ ହୁଏ । ବ୍ୟା. କୋ. ।

**ଭଲ ଭାଷା ଓ ଖରାପ ଭାଷା :** ଭାଷା ଯେଉଁମାନେ ଯେପରି ବ୍ୟବହାର କରଂତି, ତହିଁରୁ ସେମାନଙ୍କର ବ୍ୟକ୍ତିତ୍ୱର ପରିଚୟ ମିଳେ ସିନା, ଭାଷାର ପରିଚୟ ମିଳେନାହିଁ । ଏହା ହିଁ ଭାଷାର ବିଶେଷତ୍ୱ । ତେଣୁ ପ୍ରତ୍ୟେକ ଭାଷାରେ ଭଲ, ଖରାପ ଲେଖକ ଥାଆଂତି, କିଂତୁ ପୃଥିବୀର କୌଣସି ଭାଷା ଭଲ ନୁହେଁ କି ଖରାପ ନୁହେଁ, ବଡ଼ ନୁହେଁ କି ସାନ ନୁହେଁ । ଭା.ଭା. ପ୍ର. ।

**ଭାଷା :** ଜୀବନଧାରଣ କରିବା ନିମଂତେ ଯେଉଁ ପବନକୁ ଆମେ ପ୍ରଶ୍ୱାସ ଓ ନିଶ୍ୱାସ ରୂପେ ଅହରହ ଗ୍ରହଣ ଓ ତ୍ୟାଗ କରିଥାଉଁ, ସେହି ପବନକୁ ପାଟି ଭିତରେ ଜିଭ ଦ୍ୱାରା ବିଭିନ୍ନ ପ୍ରକାରେ ସଂଚାଳିତ କରି ଆମେ ଯେଉଁ ଧ୍ୱନି ସୃଷ୍ଟି କରୁ ତାହାହିଁ ଆମର ଭାଷା । ଏଣୁ ଏହି ପ୍ରାଣ - ପବନର ଭୂମିକା ଆମର ଶାରୀରିକ ସ୍ଥିତି ପାଇଁ ଯେତେ ଗୁରୁତ୍ୱପୂର୍ଣ୍ଣ, ଆମର ଭାଷା ପାଇଁ ମଧ୍ୟ ସେତିକି ଗରୁତ୍ୱପୂର୍ଣ୍ଣ । ଓ.ଉ. ।

**ଭାଷା ଅଧିକାର :** ଲୋକଂକର ପେଟ ପାଇଁ ଦାନା, ପିଠି ପାଇଁ କନା ଜୁଟାଇବା କାର୍ଯରେ ଯେଉଁମାନେ ଲାଗିଛଂତି ସେମାନେ ବୁଝିବା ଉଚିତ ଯେ ନିଜ ଭାଷା କହିବା ଓ ଶୁଣିବାର ମୌଳିକ ଅଧିକାର ପ୍ରତ୍ୟେକ ମଣିଷର ରହିଛି । ଏହି ଅଧିକାରରୁ ବଚିଂତ ମନୁଷ୍ୟର ଜୀବନ ଏକ ଦାସତ୍ୱର ଜୀବନ । ଭା.ଭା.ପ୍ର. ।

**ଭାଷା ଅପରାଧୀ :** ଯେଉଁମାନେ ଭାଷା-ହନନ କାର୍ଯରେ ଲିପ୍ତ ରହିଛନ୍ତି ସେମାନେ ଏ ପର୍ଯନ୍ତ ଅଭିଯୁକ୍ତ ହୋଇନାହାଂତି, କାରଣ ଆମେ କେବଳ ନରହତ୍ୟାକୁ ଅପରାଧ ବୋଲି ବିଚାର କରି ଆସିଛୁଁ । ଭାଷା-ହତ୍ୟା ଯେ ଏକ ପ୍ରକାର ଜଘନ୍ୟ ଅପରାଧ ଏହା ଆମ ମନକୁ ଛୁଏଁନାହିଁ । କାରଣ ମରିବାବେଳେ ସୁଦ୍ଧା ଭାଷାର ରକ୍ତକ୍ଷରଣ ହୁଏନାହିଁ କି ଭାଷା ଚିତ୍କାର କରେନାହିଁ । ଭାଷାର ବିଲୟ ଏତେ ନିରବତା ମଧ୍ୟରେ ସାଧିତ ହୁଏ ଯେ, ତାହା ସହଜରେ କାହାକୁ ଜଣାପଡ଼େନାହିଁ । ଭା. ଭା. ।

**ଭାଷା ଓ ସାହିତ୍ୟ :** ମାଟି, ସୂତା ଓ ରଂଗର ଯେପରି ବହୁବିଧ ଉପଯୋଗ ହୋଇଥାଏ, ଭାଷାର ମଧ୍ୟ ସେହିପରି । କେବଳ ମୂର୍ତି, ଶାଢ଼ୀ ଅଥବା ଚିତ୍ର ବନିଯିବାରେ ଯେପରି ମାଟି, ସୂତା ଓ ରଂଗର ସାର୍ଥକତା ଏବଂ ସ୍ଥିତି ନିର୍ଭରଶୀଳ ନୁହେଁ, ସେହିପରି ସାହିତ୍ୟ ହେବା ଅଥବା ନ ହେବା ଉପରେ କୌଣସି ଭାଷାର ପ୍ରଚଳନ ଆଶ୍ରିତ ନୁହେଁ । ବସ୍ତୁତଃ ପୃଥିବୀର ଅଧିକ ସଂଖ୍ୟକ ଭାଷାରେ କୌଣସି ସାହିତ୍ୟ ନାହିଁ । ଭା.ଭା.ପ୍ର. ।

**ଭାଷା ତୁଳନା :** ଏକାଧିକ ଭାଷା ଜାଣିଥିବା ବ୍ୟକ୍ତି ପ୍ରତ୍ୟେକ ଭାଷାର ନିର୍ଦ୍ଦିଷ୍ଟ ପ୍ରୟୋଗ କ୍ଷେତ୍ର ନିଜେ ସ୍ଥିର କରିଥାଏ । ଉଦାହରଣ ସ୍ୱରୂପ ଜଣେ ବ୍ୟକ୍ତି ପରିବାରରେ ଓଡ଼ିଆ, ବଜାରରେ ହିଂଦୀ, କାର୍ଯାଳୟରେ ଇଂଲିଶ୍ ଏବଂ ଧର୍ମାନୁଷ୍ଠାନରେ ସଂସ୍କୃତ ଭାଷା ପ୍ରୟୋଗ କରିବାରେ କୌଣସି ଅସ୍ୱାଭାବିକତା ନ ଥାଏ । ଏହି କାରଣରୁ ସାମଗ୍ରିକ ଭାବରେ ଗୋଟିଏ ଭାଷା ସହିତ ଅନ୍ୟ ଭାଷାର ତୁଳନା ଅଥବା ମୂଲ୍ୟ ନିର୍ଧାରଣ ଆଦୌ ଆବଶ୍ୟକ ନୁହେଁ । ଭା.ଭା.ପ୍ର. ।

**ଭାଷା ଦକ୍ଷତା :** ହାତରେ ଘଂଟା ବାଂଧିଲେ ଜଣେ ଯେମିତି ସ୍ୱତଃ ସମୟାନୁବର୍ତୀ ହୋଇଯାଏନାହିଁ, ଟେବୁଲ୍ ବା ବହି ଥାକରେ 'ଅଭିଧାନ' କି 'ବ୍ୟାକରଣ' ଥୋଇଲେ ଜଣକର ଭାଷା ପ୍ରୟୋଗ ଦକ୍ଷତା ବଢ଼ିଯାଏନାହିଁ । ଭା. ଭା. ।

**ଭାଷା ପ୍ରେମ :** ଆମେ ନିଜ ଭାଷାକୁ ଆଦରିବା ନାହିଁ, ତେଣୁ ଅନ୍ୟ ଭାଷାର ଲୋକେ ଆମକୁ ଆଦରିବେ ନାହିଁ । ଆମର ନିଜ ପ୍ରତି ସମ୍ମାନ ନାହିଁ, ତେଣୁ ଆମ ପ୍ରତି କାହାର ସମ୍ମାନ ନାହିଁ । ଏ ଭଳି ଅବସ୍ଥାରେ ଆମର ଜୀବନ ଅନ୍ୟ ଯେ କୌଣସି ଜୀବର ଜୀବନ ସହିତ ସମାନ । ଭା.ଭା. ।

**ଭାଷାର କୋଣାର୍କ:** ଓଡ଼ିଆ ଭାଷାରେ ଯେତେ କାମ ଅସଂପୂର୍ଣ ବା ଖଣ୍ଡିଆ ହୋଇ ଅଟକି ରହିଛି, ସେ ସବୁକୁ ସାରିବା ନିମନ୍ତେ 'ବାରଶହ ବଢ଼େଇଙ୍କୁ ମୁଣ୍ଡକାଟ' ଆଦେଶ ଦେବା ଭଳି ଜଣେ ନରସିଂହ ଦେବଙ୍କର ଆବଶ୍ୟକତା ଅନୁଭୂତ ହେଉଛି । ଭା.ଭା. ।

**ଭାଷାର ହିତ:** ଆମର ଲୋକସଂଖ୍ୟା ଆମର କୌଣସି କାମରେ ଲାଗିବନାହିଁ । ଅନୁରୂପଭାବରେ ପୁସ୍ତକ ଅଥବା ମୁଦ୍ରିତ ସାମଗ୍ରୀର ସାମୂହିକ ସଂଖ୍ୟା ବୃଦ୍ଧି ଆମର ଭାଷାପ୍ରତି ହିତକର ହୋଇପାରିବନାହିଁ । ଓ.ବ ଧା. ।

**ଭୁଲ୍:** ତରତର ହୋଇ କଥା କହିଦେଲେ ହୁଏତ ଚଳିଯିବ, କିନ୍ତୁ ତରତର ହୋଇ ଲେଖିଲେ ବା ଛାପିଲେ କାଳକାଳକୁ ଭୁଲ୍ ସବୁ ରହିଥିବ । ଭା. ଭା. ।

**ଭୁଲ୍ ଧାରଣା:** ଏବେ କେତେଙ୍କର ଧାରଣା ହୋଇଯାଇଛି ଯେ ଯେଉଁ ବାଳକ 'ଅଂକଲ୍', 'ଗାର୍ଡନ୍', 'ଫ୍ଲାୱାର୍', 'ପେନ୍', କହୁଛି ସେ ବୁଦ୍ଧିମାନ୍ । ଅଥଚ ଯେଉଁ ପିଲା 'କାକା', 'ବଗିଚା', 'ଫୁଲ', 'କଲମ' କହୁଛି ସେ ମୂର୍ଖ । ଭା.ଭା.ପ୍ର. ।

**ମାତୃସ୍ତନ୍ୟ ଓ ମାତୃଭାଷା :** ମାତୃସ୍ତନ୍ୟର ଯେପରି କୌଣସି ବିକଳ୍ପ ନାହିଁ, ସେହିପରି ମାତୃଭାଷାର ମଧ୍ୟ କୌଣସି ବିକଳ୍ପ ନାହିଁ । ଏହି ନିର୍ବିବାଦ ସତ୍ୟକୁ ସ୍ୱୀକାର କରି ଅନ୍ୟ ଭାଷାଭାଷୀ ଲୋକେ ଆଗେଇ ଚାଲିଥିଲା ବେଳେ ଆମେ ଓଡ଼ିଆମାନେ ଏହି ସତ୍ୟର ଯଥାର୍ଥତା ନେଇ ଏବେ ବି ଆଲୋଚନାରତ । ଅନ୍ୟର ଉନ୍ନତି ଦେଖି ହୁଏତ ଈର୍ଷାନ୍ୱିତ ହେବାନାହିଁ, କିନ୍ତୁ ନିଜର କ୍ରମ ଅବନତି ଲକ୍ଷ୍ୟ କରି, ଯଦି ଆମେ ଅବଚଳିତ ରହୁଁ, ତାହେଲେ ଆମର ଆଚରଣ ଆତ୍ମଘାତୀ ବିବେଚିତ ହେବ । ଭା.ଭା.ପ୍ର. ।

**ମୁଦ୍ରଣ ତ୍ରୁଟି:** ଜଣେ ଦରଜି ଯଦି ଆମର ପୋଷାକ ସିଲେଇରେ ସାମାନ୍ୟ ଭୁଲ୍ କରି ପକାଇଲେ, ତା' ହେଲେ ତାଂକ ସହ କଳହ କରିବାକୁ ଆମେ ପଛାଉନାହୁଁ । ଲୁଣଲଂକା କି ତେଲ ମସଲାର ଭାଗମାପ ଟିକିଏ ଏପଟ ସେପଟ ହୋଇଗଲେ ଆମେ ରାଂଧୁଣିଆ ସହିତ ଝଗଡ଼ା ଆରଂଭ କରିଦେଉଛୁଁ, ଖାଇବା ଜାଗାରୁ ଉଠିଯାଉଛୁଁ । କିନ୍ତୁ ଯେଉଁ ମୁଦ୍ରାକରମାନେ ଅସଂଖ୍ୟ ଭୁଲ୍ - ଭର୍ତି ବହି ବଜାରକୁ ହଜାର ହଜାର ସଂଖ୍ୟାରେ ଛାଡୁଛନ୍ତି ସେମାନଙ୍କୁ ଆମେ କିଛି କରିପାରୁନାହୁଁ । ଭା. ଭା. ।

**ରେଡିଓର ଭାଷା :** ଖବରକାଗଜରେ ଯାହା ଛାପା ହୋଇଥାଏ ତାହା ମାଇକ୍ ବା କେମେରା ଆଗରେ ଉଚ୍ଚାରଣ କରିଦେଲେ ରେଡିଓ ବା ଟିଭିର ଭାଷା ହୋଇଯାଏ ନାହିଁ । ଓ. ଉ. ।

**ଲିଖିତ ଭାଷା :** କହିଲାବେଳେ ଯେଉଁ ଧ୍ୱନି ବାହାରେ, ତାହାକୁ ଲେଖିଦେଲେ ତାହା 'ଲିଖିତ ଭାଷା' ହୋଇଯାଏ ନାହିଁ । ଭା.ଭା. ।

**ଲିପି ଅସ୍ଥିରତା :** ଯାହାକୁ ଯେଉଁ ବନାନ ଧାରା ସୁହାଉଛି ସେ ସେପରି ଲେଖିଲେ କୌଣସି ଅସୁବିଧା ନାହିଁ । କିନ୍ତୁ ଗୋଳିଆମିଶା କରି ଯେଉଁମାନେ ବ୍ୟକ୍ତିଗତ ଅଭ୍ୟାସ ଅନୁସାରେ ଏଠି ପାରଂପରିକ ତ ସେଠି ବୈକଳ୍ପିକ ଧାରାରେ ଶବ୍ଦଗୁଡ଼ିକର ବନାନ କରୁଛନ୍ତି ସେମାନେ ହିଁ ଓଡ଼ିଆ ଲିପି ରାଇଜରେ ଅସ୍ଥିରତା ସୃଷ୍ଟି କରୁଛନ୍ତି । ଭା.ଭା.ପ୍ର. ।

**ଲୋକଙ୍କ ଭାଷା :** ଏ ପର୍ଯ୍ୟନ୍ତ ଏଠି ମୁଖ୍ୟ, ଭାଷା ଗୌଣ ହୋଇ ରହି ଆସିଛି । ଓଡ଼ିଶା ମୁଖ୍ୟ । ଏହାର ନଦୀ, ପାହାଡ଼, ଜଂଗଲ, ସମୁଦ୍ର, ଖଣି ଇତ୍ୟାଦି ପ୍ରାକୃତିକ ବିଭବର ବ୍ୟାବସାୟିକ ଉପଯୋଗ କରୁଥିବା ଲୋକଙ୍କ ପାଇଁ ଓଡ଼ିଶା ମୁଖ୍ୟ । ସଂପଦଶାଳିନୀ ଓଡ଼ିଶାର ମାଟି । ଏହାକୁ ବିକ୍ରି କରି ଆମେ ଚଳୁଛୁଁ । ଅଥଚ ଏଇ ମାଟିର ଲୋକଙ୍କୁ ଆମେ ବାରଂବାର ହତାଦର କରି ଆସୁଛୁ । ଲୋକଙ୍କର ସେବା କେବଳ ଲୋକଙ୍କର ଭାଷାରେ ହିଁ ସଂଭବ । ଭା.ଭା.ପ୍ର. ।

**ଶବ୍ଦମୃତ୍ୟୁ :** ଆମ ରାଜ୍ୟରେ ଯେଉଁ ଅଞ୍ଚଳରେ ବହୁ ସଂଖ୍ୟାରେ ନଡ଼ିଆ ଗଛ ଦେଖିବାକୁ ମିଳେ ନାହିଁ ସେହି ଅଂଚଳର କଥିତ ଭାଷାରେ 'ଗୋଟମା, ଖୁରୁଡ଼, ଭୂତଖିଆ, ଅଦାଢୁଆ, ପଇଡ଼, ବଗଡ଼ା, ଚାଂଚ, ଛାଂଚି, ଖୋସା, ନାଳି, କତା ଭଳି ଶବ୍ଦ ଆଦୌ ଶୁଭେନାହିଁ ଏବଂ ଏଥିରେ କିଛି ଅସ୍ୱାଭାବିକତା ନାହିଁ । ଭା.ଭା. ।

**ଶବ୍ଦର ବିଭାଗୀକରଣ :** ନିଜ ଚତୁର୍ଦ୍ଦିଗରେ ଏଡ଼େ ସୁନ୍ଦର ସୁନ୍ଦର ଶବ୍ଦ ଥିବା ସତ୍ତ୍ୱେ ଆମେମାନେ ଯଦି ସେଗୁଡ଼ିକୁ 'ଦେଶିଆ', 'ଦେଶଜ','ଦେଶ୍ୟ', 'ଗ୍ରାମ୍ୟ', 'ଗାଉଁଲି', 'ମଫସଲି', 'ଆଂଚଳିକ ଭାଷା' ଇତ୍ୟାଦି ନାମ ଦେଇ ପାଖରୁ ହଟାଇ ଦେବା, ତା ହେଲେ ଓଡ଼ିଆର ଭାବ ପ୍ରକାଶ କ୍ଷମତା ବଢ଼ିବ ନାହିଁ । ଭା.ଭା.ପ୍ର. ।

**ଶୁଦ୍ଧ ବନାନ :** ୧. ଚିକିତ୍ସକମାନଙ୍କର ମହାସଭା ଯେଉଁ ଖାଦ୍ୟଦ୍ରବ୍ୟଗୁଡ଼ିକୁ ସ୍ୱାସ୍ଥ୍ୟପାଇଁ ହାନିକାରକ ବୋଲି ଘୋଷଣା କରିଥାଏ, ସେହି ଖାଦ୍ୟଦ୍ରବ୍ୟଗୁଡ଼ିକୁ ଆମେ

ନିର୍ବିଚାର ଭାବେ ଖାଇ ଚାଲିଥାଉଁ । ଢିଭର ପାଲରେ ପଡ଼ିଥିବା ଲୋକମାନେ ଖାଇଲାବେଳେ ଭଲମନ୍ଦ କିଛି ବାରିପାରନ୍ତିନାହିଁ । ଅନୁରୂପ ଭାବରେ ଭାଷାବିଜ୍ଞାନୀ ଓ ବ୍ୟାକରଣ-ଅଭିଧାନ କର୍ତାଗଣ ଯେଉଁ ଶବ୍ଦଗୁଡ଼ିକୁ ଅଶୁଦ୍ଧ ବୋଲି ଅଖ୍ୟାତ କରିଥାଆନ୍ତି, ସେହି ଶବ୍ଦଗୁଡ଼ିକର ଶୁଦ୍ଧରୂପ ଜଣାଥିଲେ ବି ଆମେ ପ୍ରୟୋଗ କରୁନା । ଭା.ଭା. ।

୨. ଯେଉଁମାନେ 'ଗଣେଶ' ନାମଟିକୁ ସୁଦ୍ଧା ଶୁଦ୍ଧ ରୂପରେ ଲେଖି ଜାଣନ୍ତିନାହିଁ, ସେମାନେ ଯେତେ ଜାକଜମକ ସହ ପୂଜା କରନ୍ତୁ ନା କାହିଁକି, ଗଣେଷ ତାଙ୍କ ପ୍ରତି ପ୍ରସନ୍ନ ହେବାର କୌଣସି ସମ୍ଭାବନା ନାହିଁ । ଭା.ଭା ।

୩. ଶୁଦ୍ଧତା ନିର୍ଣୟ ନିମନ୍ତେ ଯଦି ଆମେ ବହୁମତକୁ ହିଁ ପ୍ରମାଣ ରୂପେ ଗ୍ରହଣ ଦରିବା, ତାହାଲେ ଭାଷାର ଶୁଦ୍ଧଅଶୁଦ୍ଧ କିଛି ନଥାଏ ବୋଲି ସ୍ୱୀକାର କରିବାକୁ ହେବ । ଏ ପ୍ରକାର ଦୃଢ଼ମୂଳ ବିଶ୍ୱାସ ପାଳନ କରି ଚାଲିଲେ ଆମେ ଯେଉଁ ଭାଷା କହିବା ଓ ଲେଖିବା ତାହା ସମ୍ଭବତଃ କାହାରି ବୋଧଗମ୍ୟ ହୋଇ ନ ପାରେ । ...ଶୁଦ୍ଧତା ନିରୂପଣ ନିମନ୍ତେ ଆମକୁ ସର୍ବଦା ଯୁକ୍ତି-ନିର୍ଭର ହେବାକୁ ପଡ଼ିବ । ଭା.ଭା. ।

୪. ସମୟ କେତେଟା ? ଏହି ପ୍ରଶ୍ନ ଆପଣ ପାଞ୍ଚଜଣ ଘଣ୍ଟା ବାନ୍ଧିଥିବା ଲୋକଙ୍କୁ ପଚାରିଲେ ପାଞ୍ଚଟି ଅଲଗା ଉତ୍ତର ପାଇବେ । ... ପ୍ରାୟ ସେହିପରି ଆମର ଶବ୍ଦଗୁଡ଼ିକର ବନାନ । କିଏ 'ବାଦୀ, ଶାଢ଼ୀ,ବେଦୀ', ଲେଖିବାରେ ଅଭ୍ୟସ୍ତ, ତ ଆଉ କିଏ 'ବାଦି, ଶାଢ଼ି ଓ ବେଦି' । ଭା.ଭା. । ❑

ଗୁରୁ-ଲିପି

ଫ.ମୋ. ମହାବିଦ୍ୟାଳୟ, ବାଲେଶ୍ୱର

ପ୍ରିୟବନ୍ଧୁ ସନ୍ତୋଷ,

ତୁମର ପତ୍ରରୁ ତୁମର ଓଡ଼ିଆ ଭାଷା ଓ ସାହିତ୍ୟ ପ୍ରତି ଲଗନ୍ତୁ ଜାଣି ଆନନ୍ଦିତ ହେଲି। ଏହି ଭାବକୁ ନିଜ ଭିତରେ ବଞ୍ଚାଇ ରଖିବାକୁ ଚେଷ୍ଟା କଲେ ଜୀବନ ସାର୍ଥକ ହେବ।

ଜୁଲାଇ ୧୫ ତାରିଖ ପତ୍ରେ ସୂଚିତ 'ଭାଷାଭାବନା' ପୁସ୍ତିକା ତୁମେ ବରଂ ଆଖପାଖର ଅନ୍ୟ କୌଣସି 'ସଂବାଦ'-ପ୍ରକାଶକଙ୍କ ଠାରୁ ସଂଗ୍ରହ କରିବାକୁ ଚେଷ୍ଟା କର। କାରଣ ପ୍ରତିଦିନ ତୁମ ପାଖକୁ [illegible]



ପୋଷ୍ଟ କାର୍ଡ POST CARD

ଶ୍ରୀ ସଂତୋଷ କୁମାର ମହାନ୍ତି
ମୁଠା
ବୋରିକିନା
ଜଗତ୍‌ସିଂହପୁର

ପିନ PIN ୭୫୪୧୧୦

ସକାଳ ଆଗରୁ ଲେଖା ଆଜି
ପଠାଇବ । ମୋ ପତ୍ରରେ ଭୁଲ
ହେବ ନାହିଁ । ଏଥି ପାଇଁ ଦୁଃଖିତ ।
ଶୁଭେଚ୍ଛା ସହ

ପ୍ରଫୁଲ୍ଲ କୁମାର ମହାନ୍ତି
୧୩.୮.୯୭

ମୋତେ ଲେଖିଥିବା ପ୍ରଥମ ଚିଠିରେ ତାଙ୍କ ହସ୍ତଲିପିର ନମୁନା

ଭାଷା ଭାବନାରେ ତ୍ରିପାଠୀ :

ଇଂରାଜି ଭାଷା-ସାହିତ୍ୟ ଅଧ୍ୟାପନାରୁ ଅବସରପ୍ରାପ୍ତ, ଡକ୍ଟର୍ ପ୍ରଫୁଲ୍ଲ କୁମାର ତ୍ରିପାଠୀ ଜଣେ ଭାଷାବିତ୍ ଓ ସାହିତ୍ୟିକଭାବରେ ଓଡ଼ିଶାରେ ବେଶ୍ ଜଣାଶୁଣା । ଚଳିତ ସମୟରେ ଓଡ଼ିଶାର ସର୍ବାଧିକ ସକ୍ରିୟ ଏହି ଭାଷାବିତ୍ ଓଡ଼ିଆ ବନାନ ବା ଲିପିକୁ ସରଳ ଓ ଲୋକାଭିମୁଖୀ କରିବାରେ ଏବେ ପ୍ରୟାସରତ । ଓଡ଼ିଆ ଖବରକାଗଜରେ ଦୈନିକ ସ୍ତମ୍ଭଲିଖନର ପରଂପରା ତାଙ୍କର 'ଭାଷା ଭାବନା' ସ୍ତମ୍ଭରୁ ହିଁ ଆରମ୍ଭ ହୋଇଛି । ଏବେ ଓଡ଼ିଆ ଗଣମାଧ୍ୟମର ଭାଷାନୀତି ନିର୍ଦ୍ଧାରଣ ପାଇଁ ସେ ପରାମର୍ଶ ଦେଇ ଚାଲିଛନ୍ତି । 'ଆମ ଓଡ଼ିଶା'ଦ୍ୱାରା ଆୟୋଜିତ 'ଶୁଦ୍ଧ ଓଡ଼ିଆ ଲିଖନ ପରୀକ୍ଷା'ର ସେ ହେଉଛନ୍ତି ମୂଳ ସୂତ୍ରଧର ।

ତାଙ୍କର ଭାଷା ବହି :- 'ଶବ୍ଦନିଧି', 'ଭାଷା ଭାବନା', 'ଅନକ୍ଷର', 'ଓଡ଼ିଆ ଉଚ୍ଚାରଣ', 'ଇଟିଭି ଭାଷା ସହଚର', 'ସମ୍ବଲପୁରି - ଓଡ଼ିଆ ଶବ୍ଦକୋଷ', 'ଶବ୍ଦଗଠନ କୋଷ', 'ବ୍ୟାକରଣ କୋଷ' ଓ ଆହୁରି ଅଠରଟି ।

'ନିଜ ସିଂହାସନ' ଗପ ବହିପାଇଁ ତାଙ୍କୁ ମିଳିଛି 'ଓଡ଼ିଶା ସାହିତ୍ୟ ଏକାଡେମୀ' ପୁରସ୍କାର ।



ଏ ବହିର ସଂକଳକ ଓ ସଂପାଦକ ଶ୍ରୀ ସନ୍ତୋଷ କୁମାର ମହାନ୍ତି, ନୂଆ ପିଢ଼ିର ଜଣେ ପ୍ରତିଭାବାନ୍ ଗବେଷକ । ହାଇସ୍କୁଲ୍‌ରେ ପଢ଼ିବା ସମୟରୁ ଭାଷା ଓ ସାହିତ୍ୟ ପ୍ରତି ତାଙ୍କର ବିଶେଷ ଅନୁରାଗ । ଲେଖିଛନ୍ତି ଗପ, କବିତା ଆଉ କରିଛନ୍ତି ଭାଷା ଚର୍ଚ୍ଚା ; ତାହା ପୁଣି ଚିଠିରେ । ଏ ବହିରୁ ତାଙ୍କ ଛାତ୍ର ଜୀବନର ଭାଷା ଅନୁସନ୍ଧିତ୍ସା ବା ଭାଷାଚର୍ଚ୍ଚାର ବଳିଷ୍ଠ ନମୁନା ମିଳେ ।

ଅଷ୍ଟମ ଶ୍ରେଣୀରେ ପଢ଼ିବା ବେଳେ ତାଙ୍କର ପ୍ରଥମ ଲେଖା ପ୍ରକାଶ ପାଏ ସାପ୍ତାହିକ 'ରବିବାର' ପତ୍ରିକାରେ । ଏହା ପରଠାରୁ ତାଙ୍କର ଶତାଧିକ ଲେଖା ଯଥା:- ଗପ, କବିତା, ପ୍ରବନ୍ଧ ଆଦି ପ୍ରକାଶିତ । ଶବ୍ଦରେ ରହିଛି ତାଙ୍କର ସୁଖ ଆଉ ଶବ୍ଦରୁ ବି ସେ ଖୋଜନ୍ତି ସୌନ୍ଦର୍ଯ୍ୟ । ଡକ୍ଟର୍ ନଟବର ଶତପଥୀଙ୍କ ଓଡ଼ିଆ ଅଭିଧାନ 'ଶବ୍ଦସିନ୍ଧୁ'ରେ କରିଛନ୍ତି ଉଲ୍ଲେଖନୀୟ ସହାୟତା । ସୌନ୍ଦର୍ଯ୍ୟପ୍ରିୟ ଶ୍ରୀ ମହାନ୍ତିଙ୍କର ଅଛି ପୁଣି ଫଟୋଗ୍ରାଫି ପ୍ରତି ବହୁ ସଉକ । କଟକ ରହଣି ବେଳେ ପ୍ରାୟ ଦୁଇବର୍ଷ କାଳ ଦ୍ୱିଭାଷୀ ସାହିତ୍ୟ ପତ୍ରିକା 'ସହଯୋଗୀ'ର ସଂପାଦନାରେ ସଂପୃକ୍ତ ।

ଗାଁ ତାଙ୍କର ଜଗତ୍‌ସିଂହପୁର ଜିଲାର ବୋରିକିନା ପାଖାପାଖି ଦୂଆ । ବର୍ତ୍ତମାନ ସେ ମହୀଶୂରର 'କେନ୍ଦ୍ରୀୟ ଭାରତୀୟ ଭାଷା ସଂସ୍ଥାନ'ରେ ଓଡ଼ିଆ ଭାଷାପାଇଁ କାର୍ଯ୍ୟରତ । ତାଙ୍କର ଆଉ ଦୁଇଖଂଡ ବହି : 'ତେଲୁଗୁ ସୋପାନ', 'ପଣ୍ଡା ପଣ୍ଡିତ ପତ୍ରାବଳି' ।

ISBN 13 978-93-80824-44-4